କ.ମପାଳ ଦ୍ୱିଜଙ୍କ ପ୍ରଚଳିତ ତାଳପତ୍ର ପୋଥି ଅନୁଯାୟୀ

ନାରାୟଣ ଚନ୍ଦ୍ର ଦାସଙ୍କ ଦ୍ୱାରା ରଚିତ

# ବରାହ ପୁରାଣ

ମୂଲ୍ୟ—ଟ ୨.୫୦ ପଇସା ମାତ୍ର

(ଷଷ୍ଠ ସଂସ୍କରଣ)

ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର
ପ୍ରୋପ୍ରାଇଟର—ଶ୍ରୀ ଗଦାଧର ସାହୁ, ଅଲିଶାବଜାର, କଟକ
ଷଷ୍ଠ ମୁଦ୍ରଣ — ୧୯୭୯

କାମପାଳ ଦ୍ୱିଜଙ୍କ ପୁରାତନ ତାଳପତ୍ର ପୋଥି [illegible]

୰ ନାରାୟଣଚନ୍ଦ୍ର ଦାସଙ୍କ ଦ୍ୱାରା ରଚିତ

# ବରାହ ପୁରାଣ

ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ॥



## ମହାଦେବଙ୍କ ବନ୍ଦନା

ଜୟ ତୁମ୍ଭେ ମହାଦେବ କଇଲାସବାସୀ
ଜୟ ତୁମ୍ଭେ ବିଶ୍ୱନାଥ ଜୟଦେବ କାଶୀ ।
ଜୟ ତୁମ୍ଭେ ସଦାନନ୍ଦ ଜୟ ପଞ୍ଚକଣ୍ଠା
ଜୟ ତୁମ୍ଭେ ବିରୂପାକ୍ଷ ଜୟ ହେ ନୀଳକଣ୍ଠା ।
ଜୟ ତୁମ୍ଭେ ମୃତ୍ୟୁଞ୍ଜୟ ଭକତ ବତ୍ସଳ
ଜୟ ତୁମ୍ଭେ ବ୍ୟୋମକେଶ ନମସ୍ତେ ଧବଳ ।
ଜୟ ନମଃ ସ୍ୱରୂପାୟ ଦକ୍ଷଯାଗଭଞ୍ଜା
ନମସ୍ତେ ଦିଗମ୍ବରାୟ କାଳଭୟ ଗଞ୍ଜା ।
ଭକତ ରକ୍ଷଣେ ନାଥ ତୁମ୍ଭ ଆଜ୍ଞା ଟାଣ
ନମସ୍ତେ ହେ ବିରୂପାକ୍ଷ ଅକାଳ ରକ୍ଷଣ ।
ନମସ୍ତେ ହେ ମହାଦେବ ଭସ୍ମ ବିଲେପନ
ନମସ୍ତେ ହେ ମହାଦେବ ପନ୍ଦର ଲୋଚନ ।

ଅନ୍ତରୀକ୍ଷେ ନବଲକ୍ଷ ବାଜଇ ଡମ୍ବରୁ
ବୃଷଭ ବାହନ ନାଥ ଗଳେ ସର୍ପ ଫେରୁ ।
ଜୟ ମହାଦେବ ସୋମ ସଜଳ ଲୋଚନ .
ଜୟ ଖଟ୍ୱାଙ୍ଗ୍ୟ ଶ୍ମ ହେ କପାଳ ମୋଚନ ।
ନମସ୍ତେ ହେ ନୀଳକଣ୍ଠ ଶ୍ମଶାନରେ ବାସ
ନମସ୍ତେ ଚନ୍ଦ୍ର ମଣ୍ଡଳ ପ୍ରବଳ ଜଳ ଶୋଷ ।
ନମସ୍ତେ ହେ ଜ୍ୟୋତିର୍ମୟ ପୂର୍ଣ୍ଣକର କାମ
ଗିରିଜା ପ୍ରାଣନାଥ ହେ ନମୋ ଦେବବ୍ରହ୍ମ ।
ବିଷ୍ଣୁଙ୍କର ସଖା ତୁମ୍ଭେ ଅଟ ବ୍ରହ୍ମଜ୍ଞାନୀ
ବିଷ୍ଣୁଙ୍କର ଆତ୍ମା ତୁମ୍ଭେ ଯୋଗରୂଢ଼ ଧ୍ୟାନୀ ।
ବୃପଢ଼େ ମାରି ଦକ୍ଷର ଛିଡ଼ାଇଲ ମୁଣ୍ଡ
ଦେବତାମାନଙ୍କୁ ମୁଣି କଲ ଖଣ୍ଡଖଣ୍ଡ ।
ଆପଣଙ୍କ କୋପ ଦେଖି ପ୍ରଜାପତି ପତ୍ନୀ
ତୁମ୍ଭକୁ ଆଇଲେ କରେ ଅର୍ଘ୍ୟଥାଳୀ ଘେନ ।
ଆପଣ ତ ହୋଇଥିଲ କୋପରେ ପ୍ରଚଣ୍ଡ
ତେଣୁ ଶାଶୁଙ୍କୁ ପ୍ରଭୁ ହେ ଦେଖାଇଲ ଅଣ୍ଡ ।
ତାହାଙ୍କୁ ବୋଇଲେ ଏହା ବନ୍ଦାପନା କର
ଆଜ୍ଞାପାଇ ଶାଶୁ କଲେ ସେହି ପରକାର ।

ଦକ୍ଷଯଜ୍ଞେ ଲଗାଇଲ ଛାଗମୁଣ୍ଡ ନେଇ
ବହୁ ସ୍ତୁତି କଲା ଦକ୍ଷ ନିଜ ପ୍ରାଣ ପାଇ ।
ଗୁରୁଜନ ଅପମାନ କରନ୍ତେ ଏ ପ୍ରାୟେ
ସେ ଦୋଷରୁ ଲିଙ୍ଗ ପୂଜା ପାଅ ଆଜଯାଏ ।
ଶୁଦ୍ଧ ସ୍ଫଟିକର ବର୍ଣ୍ଣ ନମୋ ନିରଞ୍ଜନ
ଦଶଦିଗ ଯାକ ଅଟେ ତୁମ୍ଭର ବସନ ।
ଅନାଦି ନିଧନ ନାଥ ଜୟ ଯୋଗେଶ୍ୱର
ପିନାକ ପାଶୁପତାସ୍ତ୍ର ଧର ସଦା କର ।
ରଜତ ଗିରିବାସୀ ହେ ନମସ୍ତେ ନମସ୍ତେ
ଚଉଦବ୍ରହ୍ମାଣ୍ଡେ ସ୍ତୁତି କରୁଥାନ୍ତି ନିତ୍ୟେ ।
ପାତାଳ ପୟର ନାଭି ଅଟେ ଭୁବଲୋକ
ସ୍ୱର୍ଗ ମର୍ତ୍ତ୍ୟ ଲୋକ ଅଟେ ହୃଦୟ ମସ୍ତକ ।
ଜୟ ଅନ୍ଧନାଶୀ ଅଟ ପ୍ରଭୁ ନିରଞ୍ଜନ
କାମ ଦହନକାରୀ ହେ ନମୋ ପୂର୍ଣ୍ଣବ୍ରହ୍ମ ।
ହରିହର ମିଶି କର ଭବ ନିବାରଣ
ସନ୍ଥଙ୍କୁ ପାଳନକର ଦୁଷ୍ଟଙ୍କୁ ମାରଣ ।
ସର୍ବାଙ୍ଗ ସୁନ୍ଦରନାଥ ଅଳପକେ ତୁଷ୍ଟି
ତୁମ୍ଭର ଲୋମମୂଳରୁ ଜାତ କର ସୃଷ୍ଟି ।
ସହସ୍ର ସହସ୍ର ଲକ୍ଷ କୋଟି କୋଟି ହୋଇ
ଲିଙ୍ଗ ରୂପରେ ବ୍ୟାପିଛ ଚରାଚର ମହୀ ।
ସର୍ବ ପ୍ରାଣିଙ୍କ ହୃଦୟ ତୁମ୍ଭର ଆବାସ
ଚତୁର୍ବର୍ଗ ଦାତା ପ୍ରଭୁ ହର କଳମଷ ।
ମୁହିଁ ତୁମ୍ଭର ସେବକ ବିପ୍ର କାମପାଳ
ଦୟାକରି ବସ ଆସି ମୋ ହୃଦ କମଳ ।
ବରାହ ପୁରାଣ ଲେଖା କରିବାଇଁ ଚିତେ
ଦୁଷ୍ଟଜନଙ୍କୁ ସର୍ବଦା ଭୟ ମୋର ଚିତ୍ତେ ।
ଜ୍ଞାନୀଏ ନିଜ ଗୁଣରୁ ଦେବେ କ୍ଷମା ଦାନ
ମୂର୍ଖଙ୍କ ବଚନ ମୋତେ ଅଙ୍କୁଶ ସମାନ
ଆହେ ସଦାନନ୍ଦ ଦୟା କରିଥାଅ ମୋତେ
ବରାହ ପୁରାଣ ଲୁହ ଥାଇଁ ହୃଦଗତେ ।
ଶାନ୍ତ ଶାନ୍ତ ମହାଦେବ ଅନାଥର ଗତି
ତୁମ୍ଭ ଚରଣେ ପ୍ରଣାମ ମୋର ନିତି ନିତି ।
ଗିରିଜାନାଥ ଚରଣ କମଳ ସରୋଜେ
ଶରଣ ପଶଇ ଦ୍ୱିଜ କାମପାଳ ବିଜେ ।

—o—

## ଦତ୍ତଙ୍କର ପୁତ୍ରକାମନା ଓ
## କଶ୍ୟପଙ୍କ ବରଦାନ

ଅଭିମନ୍ୟୁଙ୍କ ନନ୍ଦନ ପରୀକ୍ଷିତ ରାଜା
ଶୁକମୁନିଙ୍କ ଚରଣେ କରି ପାଦ ପୂଜା ।
କର ଯୋଡ଼ି ବସିଲା ହୋଇ ପ୍ରହସିତ
ଅନେକ ପୁଣ୍ୟ ତୁମ୍ଭଙ୍କୁ ଦେଖିଲା ମୋ ନେତ୍ର ।
ବ୍ୟାସଙ୍କ ନନ୍ଦନ ତୁମ୍ଭେ ପରଂବ୍ରହ୍ମ ଜ୍ଞାନୀ
ଶ୍ରୀବିଷ୍ଣୁ ପୁରାଣ ମୋତେ କହ ମହାମୁନି ।
ମତ୍ସ୍ୟ କୂର୍ମ ପୁରାଣକୁ କହିଛନ୍ତି ବ୍ୟାସ
ବରାହ ପୁରାଣ ତୁମ୍ଭେ କୁହ ମୁନୀଶ
ବରାହରୂପୀ କାହିଁକି ହେଲେ ଦେବ ହରି
ଦନ୍ତାଗ୍ରେ ଧରିଲେ କିପାଁ ଏହି ବସୁନ୍ଧରୀ ।
ସେହିକଥା ଶୁଣିବାକୁ ମୋର ବଡ଼ ମନ
ବିଷ୍ଣୁ ଅବତାର ଶୁଣି ହୋଇବି ମୋଚନ ।
ମାୟା ସଂସାର ମାୟାରେ ନରେ ହୋଇ ରତ
ଧନ ଦାରା ସମ୍ପତ୍ତିରେ ହୋଇଲେ ମୋହିତ ।
ତେଣୁ ଏ ସଂସାର ମୋତେ ଦିଶେ କାଳପାଶୀ
ହରି ବାଣୀ ଖଡ଼୍ଗରେ ପଳା ଏହା ନାଶି ।
ରାଜାଙ୍କ ଭକତି ଦେଖି ତହୁଁ ମୁନିବର
ପ୍ରଶଂସା କରି କହନ୍ତି ବ୍ୟାସଙ୍କ କୁମର ।
ତୋର ପିତାମହ ଥିଲେ ବିଷ୍ଣୁର ଭକତ
କୃଷ୍ଣ କୃପା ନ ହୋଇବୁ ତୁତ ତାଙ୍କ ପୌତ୍ର ।
ଯେଉଁ ନାରାୟଣ ତୋତେ ଗର୍ଭରୁ ରଖିଲେ
ସବୁ ଛାଡ଼ିଦେଇ ଏବେ ଭଜ ତାଙ୍କୁ ଭଲେ ।
ଶ୍ରୀହରି ପୁରାଣ ଧ୍ୱନି କର୍ଣ୍ଣେ ଶୁଣୁଥିବୁ
ଜୀବନାନ୍ତେ ରାଜା ତୁହି ବଇକୁଣ୍ଠେ ଯିବୁ ।
ଏବେ ଯେ ବିଷ୍ଣୁ ପୁରାଣ କହିବାକୁ ତୋତେ
ବରାହ ଅବତାରରେ ଯାହା କଲେ ଯେତେ ।
ଆମ୍ଭର ପିତା ଏ ଗ୍ରନ୍ଥ ରଚନା କରିଣ
ପୂର୍ବେ ଗୁହ ରାଜା ଆଗେ କହିଥିଲେ ଜାଣ ।
ବ୍ରହ୍ମାଙ୍କ ମୁଖୁ ପ୍ରଥମେ ଶୁଣିଥିଲେ ତାତ
ବରାହ ପୁରାଣ ଏହି ଅମୃତ ଚରିତ ।
ତାହାଙ୍କୁ ଏବେ କହିବା ଶୁଣ ନୃପବର
ପବିତ୍ର ପୁରାଣ ଏହି ଅଟେ ଦିବ୍ୟ ସାର ।

ନାରାୟଣ ଭ୍ରୂଲତାରୁ ପୁରୁଷେ ଉତ୍ପତ୍ତି
ସେ ପୁରୁଷ ନାମ ଦେଲେ ଦକ୍ଷ ପ୍ରଜାପତି ।
କାଳେ ତାହାଙ୍କ ଦୁହିତା ହୋଇଲେକ ଜାତ
ବିଭା କରିବାକୁ ସେ ଯେ ବିଚାରିଲେ ଚିତ୍ତ ।
ସନାତନ ବିଷ୍ଣୁଠାରୁ ପୁରୁଷେକ ଜନ୍ମ
ତାହାଙ୍କର ନାମ ହେଲା କଶ୍ୟପ ବୋଲିଣ ।
ସେହି ପୁରୁଷକୁ ଦକ୍ଷ କରି ଆନୟନ
ଦିତି ଅଦିତି କନ୍ୟାଙ୍କୁ କରିଲେ ପ୍ରଦାନ ।
ଅଦିତି ଗର୍ଭରୁ ଦେବେ ହୋଇଲେ ସମ୍ଭୂତ
ଦିତି ଗର୍ଭରୁ କେବଳ ଜନମ ଦଇତ ।
କାଳେ ତାଙ୍କୁ ବଧ କଲେ ଦେବ ନାରାୟଣ
ପୁତ୍ର ଦୁଃଖେ ଦିତି କଲେ ବହୁତ ରୋଦନ ।
କଶ୍ୟପ ମୁଖକୁ ଚାହିଁ ବୋଲନ୍ତି ସୁମୁଖୀ
ତୁମ୍ଭକୁ ଆଶ୍ରୟ କରି ହେଲି ଅପୁତ୍ରିକା ।
ପୁତ୍ରବତୀଙ୍କ ମୁଖକୁ ଚାହିଁବି କେମନ୍ତେ
ମୋର ଦୁଃଖ କି ନ ଲାଗେ ତୁମ୍ଭଙ୍କୁ କାନ୍ତେ ।
ତୁମ୍ଭେ ଅବା ବୋଲୁଅଛ ତୁମ୍ଭ ପୁତ୍ର ଅଛି
ଏ ସିନା ଏକାକୀ ହୋଇ ଅପୁତ୍ରି ହୋଇଛି ।
ଏହା ବିଚାରିଣ ଅବା ନ ଚାହିଁଲ ମୋତେ
ତୁମ୍ଭର ଘରଣୀ ହୋଇ ଯାଉଛି ବିଅର୍ଥେ ।
ଏହା ବୋଲିଣ ରମଣୀ ପଡ଼େ ପାଦତଳେ
ଭୁଜ ଧରିଣ ତୋଳିଲେ କଶ୍ୟପ ବଚନେ ।
ଆଦରେ ପତି ତୋଳନ୍ତେ ଉଠିଲେ ସେ ନାରୀ
ବେନି ନୟନୁ ଲୋତକ ପଡ଼େ ଝରି ଝରି ।
କଶ୍ୟପ ବୋଇଲେ ତୁମେ ନ କର ରୋଦନ
ପୁଣି ଅବଶ୍ୟ ତୋହର ହୋଇବେ ନନ୍ଦନ ।
ଦିତି ବୋଇଲେ ମୋହର ହେଉ ଇଚ୍ଛା ହେଲା
ଏତେ ଦିନ ଯାଏ ତୁମ୍ଭ ଦୟା ନ ବଳିଲା ।
ହିତପ୍ରଦ ବ୍ରହ୍ମା ତୁମ୍ଭେ ହେ ଅତି ତପୋବନ୍ତ
ତ୍ରିକାଳର କଥାମାନ ତୁମ୍ଭଙ୍କୁ ବିଦିତ ।
ତୁମ୍ଭେ ମନ କଲେ ପାର ନବସୃଷ୍ଟି କରି
କଶ୍ୟପ ବ୍ରହ୍ମା ବୋଲାଇଣ ନାମ ଯେଣୁକରି ।
ଏବେ ଏ ସୃଷ୍ଟି କେବଳ ତୁମ୍ଭଠାରୁ ଜାତ
ତୁମ୍ଭ ପୁତ୍ର ନାତି ପୂରିଛନ୍ତି ତ୍ରିଜଗତ ।
ଇନ୍ଦ୍ର ସୂର୍ଯ୍ୟ ଚନ୍ଦ୍ର ଆଦି ତୁମ୍ଭର କୁମର
ନିରଞ୍ଜନ କୁଳ ତୁମ୍ଭ ପିତା ଚକ୍ରଧର ।

କୃଷ୍ଣ କୁଳବଧୂ ପୁଣି ତୁମ୍ଭର ମୁଁ ନାରୀ
ଅପୁତ୍ରିକ ଅପକୀର୍ତ୍ତି ହେବ ତିନପୁରୀ ।
କେବଳ କରିଣି କଲି ତୁମ୍ଭର ସେ ହେଳା
ଏ ବେଳକୁ ସେ ବଚନ କର୍ମା ନ କାଟିଲା ।
ଏଥିପାଇଁ ଅପକୀର୍ତ୍ତି ହେବ ତିନପୁରୀ
ବୋଲିବେ ଯେ ଅପୁତ୍ରିକା କଶ୍ୟପଙ୍କ ନାରୀ ।
ଜପ ତପ ଯାକ ସବୁ ତାର କେଣେ ଗଲା
ନିଜ ଘରଣୀ ସନ୍ତାନ ସନ୍ତତି ନୋହିଲା ।
କୋଡ଼େ ଧରି ନୟନରେ ପୁତ୍ର ନ ଦେଖିଲି
ଅପୁତ୍ରିକା କହ ମୋତେ କି ଦୋଷ କରିଲି ।
କଶ୍ୟପ ବୋଇଲେ ତୋର ପୁତ୍ର ହୋଇଥିଲେ
ଦୁଷ୍ଟପଣ କରି ସର୍ବେ ବିନାଶ ହୋଇଲେ ।
ଆମ୍ଭେ କିମ୍ପା ଅପୁତ୍ରିକା କରିବୁଁ ଗୋ ତୋତେ
ଆପଣାର କର୍ମ ଦୋଷେ ନ ବିଚାରୁ ଚିତ୍ତେ ।
ତୋହର ଭାଲପଟରେ ହୋଇଛି ଲିଖନ
ନିଶାଚର ପୁତ୍ରମାନେ ହେଉଥିବେ ଜନ୍ମ ।
ଯେଉଁକାଳରେ ବିଧାତା ତୋତେ ଜାତ କଲା
ପ୍ରାଣୀ ରଚିବାକୁ ସେହୁ ଆଦେଶ କରିଲା ।
ସୃଷ୍ଟି ରଚିବାକୁ ସେହୁ କରନ୍ତେ ମନସ୍ଥ
ଦେବ ଦୈତ୍ୟ ନାଗ ନର ହୋଇଲେ ସମ୍ଭୂତ ।
ତୋହ ପୁତ୍ରମାନଙ୍କର ପୁତ୍ରମାନେ ଛନ୍ତି
ସର୍ବ ଦେଶେ ହୋଇଛନ୍ତି ସେମାନେ ନୃପତି ।
ତୋ କର୍ମରେ ଅଛି ହେବୁ ଅସୁର ଜନନୀ
ବିଚାର କରି କରୁଛୁ ତାହା ଧନ୍ଦୁଯୋନି ।
ତୋର ଦେଖିବାକୁ ଯେଣୁ ନାହିଁ ଏକ ସୁତ
ତେଣୁ କରି ଧଜାପଡ଼ି ହୁଏ ସଦା ଚିତ୍ତ ।
ତୁ ଯାହା ବିଚାରି ମୋତେ କହୁଛୁ ବଚନ
ଆମ୍ଭ ବୋଲେ ଜନ୍ମ ପାଉରେ ଅମର ନନ୍ଦନ ।
ତୋର କର୍ମେ ତ ଏମନ୍ତ କଥା ଅଛି ରହି
ଦଇବ ଲିଖାଣ ଆନ କରି ନ ପାରଇ ।
ଯେବେ ମୋ ବଚନ ସତ୍ୟ କରିବୁ ତାହା
ସୁଅର୍ଥ ହୋଇବ ସିନା ହେବ କାଳ ମାୟା
ଦଇବ ପୁରୁଷ ଯାହା କରିଛି ଲିଖାଣ
ଆମ୍ଭ ହାତେ ଆରେ ସତ୍ୟ ନ ହୋଇବ ଆନ ।
ଆମ୍ଭର ବଚନେ ତୋର ଗର୍ଭ ସତ୍ୟ କଲେ,
ଦେବଙ୍କଠାରେ ନିନ୍ଦିତ ହେବୁ କାଳେ କାଳେ

ତୋହର ଗର୍ଭରୁ ଜାତ ହୋଇବେ ଦଇତ
ଅମର କରିଲେ ତାଙ୍କୁ ନାଶିବେ ଜଗତ ।
ତେଣୁକରି ସିଦ୍ଧ ଆମ୍ଭେ ନ କରୁଁ ଗୋ ଦିତି
ତାହା କି ନ ଜାଣୁ ତୁହି ମୋର ଗୁଣବତୀ ।
ତୁ ଯହୁଁ ବନିତ ମୋତେ ହୋଇଲୁ ଅପାର
ତେଣୁ ତୋତେ କହୁଦେବା ତାର ପ୍ରତିକାର ।
ଏବେ ପୁଣି ଜାତ ହେବେ ତୋର ପୁତ୍ର ଦୁଇ
ଦେବାସୁର ନର ସମ ନ ହୋଇବେ କେହି ।
ବଜ୍ରରୁ ଅଧିକ ହୋଇବ ତାହାଙ୍କ ଶରୀର
ବ୍ରହ୍ମା ବିଷ୍ଣୁ ରୁଦ୍ର ହାରି ମାନିବେ ସମର ।
ଚଉଦ ବ୍ରହ୍ମାଣ୍ଡରେ ସେ ହେବେ ମହାବଳୀ
ବଧାକେ ଚୁରି ପାରିବେ ଜାଣ ମେରୁସ୍ଥଳୀ ।
ନାନା ଅସ୍ତ୍ରେ ଶସ୍ତ୍ରେ କ୍ଷତା ହେବେ ବେନଭାଇ
ମନକଲେ ପୃଥିବୀକି ନେଇପିବେ ରହି ।
ନାରାୟଣ ରୁଦ୍ର ମାରି ନ ପାରିବେ କେହି
ବେବଳ ଚିର ହୋଇଣ ନ ପାରିବେ ବହି ।
ବିଷ୍ଣୁଙ୍କୁ ଭକତି ଯେବେ କ୍ରମରେ କରନ୍ତେ
ତାହାହେଲେ ଆଗୋ ଦିତି ମୃତ୍ୟୁ ନ ଲଭନ୍ତେ ।
ଅସୁର ସ୍ୱଭାବ ବନ୍ଧ ହେଲେ ଉତପତି
ସନ୍ଥଙ୍କୁ ତଞ୍ଜିବେ ପୁଣି ହେବେ ଦୁଷ୍ଟମତି ।
ବିଷ୍ଣୁ ଭକତି ନୋହିବେ ସେହୁ କଦାଚିତେ
ଯୋଗଦ୍ରକେ ସଖି ପୂର୍ଣ୍ଣ ହେଉଅଛୁ ମୋତେ ।
ଅନେକ କାଳଯାଏ ଯେ ପ୍ରାଣ ଧେନଥିବେ
ଦୁଷ୍ଟପଣ କରି ସର୍ବେ ଜଗତ ଧ୍ୱଂସିବେ ।
ତୋର କଷ୍ଟ ଦେଖିକରି ହୋଇଲୁଁ ବିକଳ
ତେଣୁ ପୂନକୁ କରିବୁ ଜାଣ ମହାବଳ ।
ପ୍ରଥମେ ଯେବଣ ପୁତ୍ର ହୋଇବ ସଞ୍ଜାତ
ତା ଔରସୁ ଯେଉଁ ପୁତ୍ର ହୋଇବ ସମୁତ ।
ସେହି ଅମର ହୋଇବ ଦେବ ସଙ୍ଗେ ଥିବ
ବିଷ୍ଣୁ ଭକତରେ ସେହୁ ଗଣିତା ହୋଇବ ।
ହରି ବିନା ନ ଜାଣିବ ସେହୁ ଯେ କାହାକୁ
ପୂଜା କରୁଥିବ ସଦା କ୍ଷୀରୋଦ ଦେବଙ୍କୁ ।
ତୁ ବୋଇଲୁ ମୋର କୁଳ ନୁହେଁ ଅଜରାମର
ନାତି ଏବେଟି ତୋହର ହୋଇବ ଅମର ।
ଦେବତା ସଙ୍ଗରେ ତାଙ୍କୁ ଆମ୍ଭେ କଲୁ ଜଣେ
ଏବେ ପ୍ରତ୍ୟୟ ଗଲୁକି ମୋ କଥାରେ ମନେ ।

ଯାହା ବୋଲୁଅଛୁ ତାହା ସିଦ୍ଧ ମୋ ବଚନ
ବ୍ରହ୍ମା ରୁଦ୍ର ଦେବ ଦୂରି ନ ପାରନ୍ତି ଆନ ।
ଆଉ ତୁ ଶଙ୍କା ନ କର ତୋହର ମନରେ
ପ୍ରାପତ ନଷ୍ଟଯୁ ତୋତେ ହୋଇବେ କ୍ରମରେ ।
ପତି କହନ୍ତେ ସନ୍ତୋଷ ହୋଇଲେକ ନାରୀ
କହିଲେ ଯେ ଶୁକମୁନି ଶୁଣ ଦଣ୍ଡଧାରୀ ।
ଏହିରୂପେ କେତେଦିନ ତହୁଁ ବହିଗଲ
ଦକ୍ଷଙ୍କର ଜେମା ତହୁଁ ରଜୋବତୀ ହେଲ ।
ପାଞ୍ଚଦିନ ଶୁଦ୍ଧସ୍ନାନ ଗଲେ କରିବାକୁ
ଗଙ୍ଗାଜଳରେ ପ୍ରବେଶ ଘେନିଣ ସଖୀଙ୍କୁ ।
ହଳଦୀ ଗନ୍ଧଚନ୍ଦନ ସୁବର୍ଣ୍ଣ ପାତ୍ରରେ
କେଉଁ ଦାସୀ ନାନାପୁଷ୍ପ ଧରିଛନ୍ତି କରେ ।
ମେରୁ ମେଖଳାରୁ ଯେଉଁ ଗଙ୍ଗା ଆସେ ବହି
ସେହି ଜଳରେ କୁମାରୀ ଦାନ୍ତଘସେ ଯାଇ ।
ଚନ୍ଦନେ କୁଙ୍କୁମ ଘେନ ବୋଲନ୍ତି ସଜନୀ
ଗନ୍ଧ ଅଁଳା ବୋଳନ୍ତି କେବଣ କାମିନୀ ।
ଚତୁଃସମ ବୋଳିଦେଲେ ସକଳ ଅଙ୍ଗରେ
ସ୍ନାନ କରାଇଲେ ନେଇ ପଶିଣ ଜଳରେ ।
ଦେବାଙ୍ଗ ବସନ ଘେନ ପୋଛି ଦେଲେ ଅଙ୍ଗ
ଗାତ୍ରେ ବିଜେ କରାଇଲେ କରି ହାସ୍ୟ ରଙ୍ଗ ।
ନାରାୟଣ କୁଳବଧୂ କଶ୍ୟପଙ୍କ ନାରୀ
ଅକଳଙ୍କ ଚନ୍ଦ୍ର ପ୍ରାୟ ଦିଶନ୍ତି ସୁନ୍ଦରୀ ।
କୁଞ୍ଚିକରି ପିନ୍ଧାଇଲେ ଖଞ୍ଜଦ୍ର ବସନ
କୃଷ୍ଣ ଧୂମସର କେଶ ଦିଶେ ଶୋଭାବନ ।
କୁଞ୍ଚି କୁଞ୍ଚି ହୋଇ କେଶ ଜାନୁତଳ ଯାଏ
ପଡ଼ି ଶୋଭାପାଏ କଳା ବାଉଦ ପରାଏ ।
କପାଳେ ଗଣ୍ଡ ତାଙ୍କରି ଅତି ମନୋହର
ମନ ହରଣ କରଇ ଜଗତ ଜନର ।
ସେ ହରିଣୀନୟନାର ସୁନ୍ଦର ନାସାରେ
ନାକମୟୁରି ବସଣି ଅତି ଶୋଭା କରେ ।
ନାନା କୁସୁମରେ ମଣ୍ଡି ବାନ୍ଧିଦେଲେ ଖୋଷା
ରତି ଦେଖାଠାରୁ ବଳି ଦିଶିଲେ ସେ ଯୋଷା ।
ତାଳିମ୍ବମଞ୍ଜି ପରାଏ ଦିଶେ ଦନ୍ତପନ୍ତି
ଚଞ୍ଚୁପୁଟ ବିରାଜଇ ଜବାପୁଷ୍ପ ଜ୍ୟୋତି ।
ବକ୍ଷସ୍ଥଳ ସୁବର୍ଣ୍ଣର ଉଣ୍ଟା ଗୋଟି ଝୀଣ
ପଦ୍ମନାଡ଼ ପ୍ରାୟ ଭୁଜ କୁଚ ଶୋଭାବନ ।

ପାଦପାଣି ନଖ ସବୁ ଅର୍ଦ୍ଧଚନ୍ଦ୍ର ଜ୍ୟୋତି
ପାପୁଲି ତଳ ଦିଶଇ ଅରୁଣ କାନ୍ତି ।
ଅଗ୍ନିଦାହ ସୁନା ପ୍ରାୟ ବର୍ଣ୍ଣ କଳେବର
ବକ୍ଷସ୍ଥଳେ ଶୋଭାପାଏ ରତନର ହାର ।
ହସ୍ତରେ ସୁବର୍ଣ୍ଣ ବାହୁ ଅତି ଶୋଭାବନ
ପାଦେ ସୁବର୍ଣ୍ଣ ନୂପୁର ବାଜେ ରୁଣୁ ଝୁଣୁ ।
ବାହୁଦେଶେ ରତ୍ନ ତାଡ଼ ଅଙ୍ଗୁଷ୍ଠିରେ ମୁଦି
ହସିତ ମେଘେ ବିଜୁଳି ଅଛୁଇ ଆଚ୍ଛାଦି ।
କସ ପଟାମ୍ବର ଦେବ ମୋହର ଲେଖଣ
ସ୍ୱର୍ଗୀୟ ଜ୍ୟୋତିରେ ଶୋଭା ଜଗତ ଜନନୀ ।
ସକଳ ଗୁଣରେ ସେହୁ ଅଟନ୍ତି ଭୂଷିତା
ଯେଣୁ ଦେବାସୁରଙ୍କର ହୋଇଛନ୍ତି ମାତା ।
କଏ ଅବା ସମ ହେବ ଏହି ତିନିପୁରେ
ତାଙ୍କ ଉପମା କେବଳ ଅଟେ ତାଙ୍କଠାରେ ।
କପାଳେ ସିନ୍ଦୂର ବିନ୍ଦୁ ଶୋଭେ ଅତିଶୟ
ଚନ୍ଦ୍ରମା ଅରୁଣ କିବା ହୋଇଲେ ଉଦୟ ।
ଦେହ ସୁବାସ ନେବାକୁ ଆସି କରଇ ଗୁଞ୍ଜନ
ଭ୍ରମରେ ଭ୍ରମର ଆସି କରଇ ଗୁଞ୍ଜନ ।
କନ୍ତୁ ପାଶେ ଆସିବାକୁ ନୁହନ୍ତି ସାହସୀ
ବିସ୍ମରନ୍ତି ମାର ପ୍ରାୟ ହୋଇପିବୁଁ ଧ୍ୱଂସି ।
ପ୍ରକୃତିକ ଶୋଭା ତାଙ୍କୁ ଦେଇଛନ୍ତି ବିଧି
ପୂର୍ଣ୍ଣଚନ୍ଦ୍ରମା ପରାୟେ ଜ୍ୟୋତି ବିରାଜଇ ।
କାମଧେନୁ କ୍ଷୀର ପୁଣ ପକ୍ୱ ଫଳମାନ
ହିତ ଦେବୀ ବସି ତାହା କରିଲେ ଭୋଜନ ।
ଆଚମନ କରି ତହୁଁ ରଜନୀ ବଞ୍ଚିଲେ
ପ୍ରଭାତୁ ଉଠିଣ ପୁଣି ସ୍ନାହାନ ସାରିଲେ ।
ସପତବଦନରେ ନାଗୀ ଦିବ୍ୟବେଶ ହୋଇ
ପୁତ୍ର କାମନା ନିମନ୍ତେ ସ୍ୱାମୀଙ୍କୁ ପୁଜିଇ ।
ଦିବସ ଭୋଗ ଯାଇଣ ରଜନୀ ହୋଇଲେ
ରତ୍ନମୟ ଘରେ ହିତ ଯାଇ ପ୍ରବେଶିଲେ ।
ସ୍ୱଭାବେତ ସ୍ୱର୍ଗପୁର ବିଶ୍ୱକର୍ମା କୃତ
ମାଣିକ୍ୟ ପିଢ଼ୁଳା ସବୁ କାନ୍ଥରେ ଜଡ଼ିତ ।
ପଞ୍ଚରତ୍ନରେ ନିର୍ମାଣ ତହିଁ ସ୍ତମ୍ଭମାନ
ହୀରା ନୀଳା ଜଡ଼ିଅଛି ତା ପ୍ରତ୍ୟେକ ସ୍ଥାନ ।
ପୋହଳାର ଶ୍ରେଣୀ ପୁଣି ସୁନାଞ୍ଚୁଅ ବତା
ଝଲକର ବାନ୍ଧିଅଛି ତହିଁ ସୁନ ସୂତା ।

ସ୍ଥଳେ ସ୍ଥଳଶି ହୋଇଛି କେ[illegible]
ଚଥିପଟରେ ନୀଳାଘଟ ଦିଶେ [illegible]
ଦରପଣ ଧାଡ଼ ଧାଡ଼ି ଲଗିଅଛି [illegible]
ସୁନା ସୂତା ବନ୍ଧା ଝୁମ୍ପା ଓହଳୁଛି ତହିଁ ।
ମୁକ୍ତି ପୁଞ୍ଜି ରତ୍ନ ଲଗି [illegible]
କୃଷ୍ଣପକ୍ଷ ଗଗନରେ ଯେସନେ ଦିଶେ ତାରା ।
ଚନ୍ଦ୍ରାତପ ଲଗିଅଛି ଦେବୀଙ୍କ ବହନେ
ଚନ୍ଦ୍ର ସୂର୍ଯ୍ୟମାନ ଟଙ୍ଗା ତହିଁ ସ୍ଥାନେ ସ୍ଥାନେ ।
ମୁକ୍ତାର ଖାପ ବଳୀ ସବୁ ଝଳଇ
ଅନୁପମୟ ସେ ଗୃହ କସ କହିବଇଁ ।
କଶ୍ୟପ ଗୃହର କସ ଅଛି ପଟାମ୍ବର
ଆସନ ଚେଳନ୍ତି ଯାକୁ ଦେଖି ଅସ୍ତ୍ରକର ।
ରତ୍ନମୟ ଗୃହ ତାଙ୍କ କଳ୍ପିଛି ଭୁବନ
ସେ ଗୃହେ ହିତ କରନ୍ତି ସୁଶଯ୍ୟା ରଚନ ।
ସୁବର୍ଣ୍ଣ ପଲଙ୍କେ ଯାଇ ଦେବୀଙ୍କ ବସନ
ଶେଯ ସଜାଇ ସିଞ୍ଚିଲେ ବାସ ଦ୍ରବ୍ୟମାନ ।
ପଲଙ୍କ ଚଉକତିରେ ଲଗିଅଛି ଝର୍ବ
ହୀରାମାଣିକ୍ୟ ଝଟକ ଦିଶେ ଅତି ଭବ ।
ଶେଯ ସାଜଣ ତହିଁରେ ବସିଲେ ସୁବର୍ଣ
କଶ୍ୟପ ଯତି ମିଳିଲେ ଯାଇ ତାଙ୍କ କତି ।
ପତିଙ୍କୁ ଦେଖିଣ ହିତ ଆସନୁ ଉଠିଲେ
ଯାଇଣ ତାଙ୍କ ପାଦରେ ପ୍ରଣିପାତ କଲେ ।
ହସିଣ କଲ୍ୟାଣ କଲେ ତାଙ୍କୁ ମହାଯତି
ବୋଇଲେ ତୋତେ ପ୍ରାପତ ହେଉ ଗୋ ସନ୍ତତି
ତହୁଁ ହିତ ଭୁଜ ଧରି ପଲଙ୍କେ ବସିଲେ
ଏମନ୍ତେ ରଜନୀ ଯାକ ସେଠାରେ ବଞ୍ଚିଲେ ।
ରଜନୀ ଶେଷେ ଶୁଭିଲା ଯହୁଁ ଶଙ୍ଖଧ୍ୱନ
ଶଯ୍ୟାଗୃହ ବାହାରିଲେ ଯେଝା କର୍ମେ [illegible]
ବନ୍ଦଇ ଶ୍ରୀଜଗନ୍ନାଥ ନୀଳାଦ୍ରିବିହାରୀ
ବ୍ରହ୍ମାଣ୍ଡ ପ୍ରାଣୀ ଡାକନ୍ତି ଶ୍ରୀହରି ଶ୍ରୀହରି ।
କାହାକୁ ମାରୁଛ ପୁଣି କାହାକୁ ତାରୁଛ
ଇଚ୍ଛାମୟ ବୋଲି ଯେଣୁ ନାମ ବିକାଶିଛ ।
କହ ପ୍ରଭୁ ଯେବେ ହେଲ ଏମନ୍ତ ବିଚାର
ସମସ୍ତେ ତ ଡାକୁଛନ୍ତି ନାମକୁ ତୁମ୍ଭର ।
ଜଣକୁ ତାରିଲ ଅନ୍ୟ ଜଣକୁ ମାରିଲ
କହିଲେ କପାଳ ଦୋଷ ବୋଲିଣ ବୋଇଲ ।

ଯେବେ ଅବା ଏହି କଥା ହୋଇଲା ପ୍ରମାଣ
ମର୍ତ୍ତ୍ୟର କର୍ମ ଦାୟୀ ନୋହିଲ ଆପଣ ।
ମୁଁ ତ ଅଧମ ତୁମ୍ଭ ପାଦରେ ଆଶ୍ରୟ
ତାର ମୋର ପାପ କରି ତୁମ୍ଭେ ଦୟାମୟ ।
ନାମପାଳ ଦ୍ୱିଜ ତୁମ୍ଭ ପାଦରେ ଶରଣ
ଅନ୍ତେ ଦର୍ଶନ ଦେବ କହେ ନାରାୟଣ ।

— ୦ —

## ନାରାୟଣଙ୍କ ତପସ୍ୟା
## ଓ ଉର୍ବଶୀର ଜନ୍ମ ବୃତ୍ତାନ୍ତ

ଶୁକ ମୁନିଙ୍କର ପାଦେ କରି ପ୍ରଣିପାତ
ସ୍ତୁତି କଲେ ପୁଣ୍ୟ ରାଜା ପରୀକ୍ଷିତ ।
ବରାହ ପୁରାଣେ ଅଛି କେଉଁ କଥା ପୁଣି
କୃତାର୍ଥ ହୋଇବି ମୁଁ ଯେ ସେହି କଥା ଶୁଣି ।
ରାଜାଙ୍କ ବଚନେ ତୋଷ ହୋଇ ମୁନିବର
କହନ୍ତି କହୁଛି ଏବେ ଶୁଣ ନୃପବର ।
ଦେବଙ୍କ ସଦନ ଛାଡ଼ି କଶ୍ୟପ ମହର୍ଷି
ଗଙ୍ଗାକୂଳରେ ପ୍ରବେଶ ହୋଇଲେ ସେ ଆସି ।
ସ୍ନାନ ତର୍ପଣ ସାରଣ ଗୃହେ ପ୍ରବେଶିଲେ
ଅଗ୍ନି ଦେବଙ୍କୁ ଆହୁତି ପ୍ରଦାନ କଲେ ।
ଦେବତାଙ୍କେ ବୈଶ୍ୱାନରେ କଲେ ସନ୍ତୋଷ
ଏହିରୂପେ ଦେବାର୍ଚ୍ଚନ ହୋଇଗଲା ଶେଷ ।
ବ୍ରହ୍ମାଙ୍କ ପରାୟେ ତେଜ ବିକାଶେ ଶରୀରେ
କଷା କଉପୀନ ଦଣ୍ଡ କମଣ୍ଡଳୁ କରେ ।
ହୋମର ଅଗ୍ନି ଗୃହରୁ ବାହାରି ଆସନ୍ତି
ମଦନ ପ୍ରତିମା ପ୍ରାୟେ ମୂରତି ଦିଶନ୍ତି ।
କାନ୍ଧରେ ନବଗୁଣର ପଇତା ଭୂଷଣ
ଷଡ଼ରସ ଧେନୁ ଦୁଗ୍ଧ କଲେ ସେ ଭୋଜନ ।
ସୂର୍ଯ୍ୟ ସଭାକୁ ତହୁଁ ଗମନ କରନ୍ତି
ସଭାର ନିକଟେ ଯାଇ ପ୍ରବେଶ ହୁଅନ୍ତି ।
ଦେଖିଲେ ଅପସରାଙ୍କ ନର୍ତ୍ତି ନୃତ୍ୟ ଗୀତ
ଗନ୍ଧର୍ବେ ବଜାନ୍ତି ବାଦ୍ୟ ହୋଇ ଆନନ୍ଦିତ ।
ଗଦ ଗଦ ଶବଦରେ ପୂରିଛି ଆସ୍ଥାନ
ଉପରକୁ ଉଠିଲେ ବେଗେ ତପୋଧନ ।
ତାଙ୍କୁ ଦେଖିଣ ସମସ୍ତେ ସନ୍ତୋଷ ହୋଇଲେ
ଦଣ୍ଡ ଚରଣେ ସେ ଯାଇଁ ନମସ୍କାର କଲେ ।

ବ୍ରହ୍ମା ଇନ୍ଦ୍ରଙ୍କୁ ଦେଖି ସେ କଲେ ନମସ୍କାର
କଶ୍ୟପଙ୍କୁ ନମସ୍କାର କଲେ ଅଦ୍ୟ ସୁର ।
ବସିବା ନିମନ୍ତେ ବ୍ରହ୍ମା ତାଙ୍କୁ ସ୍ଥାନ ଦେଲେ
ଗଉରବ କରି ତାଙ୍କୁ ପାଖେ ବସାଇଲେ ।
କୁବେର ବରୁଣ ପୁଣି ନୈଋତି ଧର୍ମର
ସନକ ସନାତନ ଯେ ଶଶୀ ଦିବାକର ।
ଯକ୍ଷ ବିଦ୍ୟାଧର ଆଉ ଯେତେକ ସାଧକ
ଦେବ ବିଶ୍ୱକର୍ମା ଶିଳ୍ପୀ ମାରୁତ ସ୍ୱାରେକ ।
ସମ୍ବତ୍ସର ସାତବାର ବାର ବିଶ୍ୱଦେବା
ସ୍ୱନମେଘ ସହିତରେ ଅଛନ୍ତି ମଘବା ।
ଚନ୍ଦ୍ର ସୂର୍ଯ୍ୟ ଆଦି କରି ସମସ୍ତେ ଅଛନ୍ତି
ତେତିଶକୋଟି ଦେବତା ଏକଧାରେ ଛନ୍ତି ।
ଉର୍ବଶୀ କରଇ ନୃତ୍ୟ ସଭାର ଭିତରେ
ତାନ ମାନ ଲୟ ବସି ଦେଖୁଛନ୍ତି ସୁରେ ।
ପରୀକ୍ଷିତ ପଚାରିଲେ ଶୁଣ ମୁନିବର
କେଉଁଠାରୁ ଉର୍ବଶୀ ହେଲା ଅବତାର ।
ସେହିକଥା ସଂକ୍ଷେପିଣ କହ ବ୍ରହ୍ମଋଷି
ଶୁଣିଣ ମୁନି କହନ୍ତି ଶୁଣ ଦଣ୍ଡଧାରୀ ।
ଦକ୍ଷ ପ୍ରଜାପତିଙ୍କର ଦୁହିତାଏ ଜନ୍ମ
ସବୁ କନ୍ୟାମାନଙ୍କରୁ ଅଟଇ ସେ ସାନ ।
ରୂପ ଗୁଣେ ସୁଶୋଭିତା ଲାବଣ୍ୟ ମୂରତି
ଶ୍ରୁତି ବୋଲି ନାମ ତାର ଦେଲେ ପ୍ରଜାପତି ।
ସିଦ୍ଧ ବିଦ୍ୟାଧରଙ୍କୁ ଯେ ମୋହିଲା ସେ ବାମା
ଧର୍ମ ନିରଞ୍ଜନେ ବିଭା ଦେଲେ ଦକ୍ଷବ୍ରହ୍ମା ।
କାଳେ ତାହାଙ୍କ ଗର୍ଭରୁ ଜନ୍ମି ନାରାୟଣ
ତପସ୍ୟା କଲେ ମେରୁ ମେଖଳେ ଯାଇଣ ।
ଘୋର ତପ ଯହୁଁ କଲେ ନାରାୟଣ ଋଷି
ଅମରାବତୀରେ ଇନ୍ଦ୍ର ଦେଖି ମନେ ହାସି ।
ବିଚାର କରିଲେ ମୋର ଘେନିବ ଏ ପୁର
ଏମନ୍ତ ଭାବିଣ ମନେ ଡକାଇଲେ ମାର ।
ଇନ୍ଦ୍ରଙ୍କର ଆଜ୍ଞାପାଇ ମିଳିଲାକ କାମ
ତାଙ୍କୁ ଗୁହିଁଣ ବୋଇଲେ ତହୁଁ ମଘବାନ ।
ଅପସରାବୃନ୍ଦ ଘେନି ତୁମ୍ଭେ ଚଳିଯିବ
ନରଋଷି ତପ କରେ ଭାଙ୍ଗିଣ ଆସିବ ।
ଇନ୍ଦ୍ରଙ୍କର ଆଜ୍ଞା ପାଇ ଗଲେ ମନମଥ
ଅପସରାବୃନ୍ଦ ସଙ୍ଗେ ଅଛନ୍ତି ବେଷ୍ଟିତ ।

ପ୍ରବେଶ ହୋଇଲେ ଯାଇ ଋଷିଙ୍କ ଆଶ୍ରମେ
କନ୍ଦର୍ପ ପୁଷ୍ପବାଣକୁ ପ୍ରହାରନ୍ତେ ତମେ ।
ନାରାୟଣ ହୃଦେ ବାଜି ଖେଳେ ଗଲା ପଶି
ସେ ଶରକୁ ସମ୍ଭାଳିଲେ ଅଳ୍ପ ହସି ହସି
ବରୁଣଲେ ଇନ୍ଦ୍ର ମୁଁଙ୍କୁ ଦେଇଛନ୍ତି ପଠାଇ
ସ୍ୱର୍ଗରେ ରହିଛି ଆପେ ବିବାଦିତ ହୋଇ ।
ଏହାଙ୍କର ଗର୍ବ ମୁହିଁ ଭଙ୍ଗିଦେବି ଆଜ
ରୂପ ଯୌବନ ଦେଖାଇ କରନ୍ତି ପଙ୍କଜ ।
ଏତେ ଭାବିଣ କଳ୍ପନା କଲେ ଚକ୍ରପାଣି
ଅଦଭୁତେ ଜାତ ହେଲା ଏକଇ ତରୁଣୀ ।
ଦିବ୍ୟ ବସ୍ତ୍ର ନାନାରତ୍ନେ ହୋଇଛି ଭୂଷିତ
ଇନ୍ଦ୍ରଗଣ ମଧ୍ୟେ ଯାଇ ପ୍ରବେଶ ତୁରିତ ।
ତାଙ୍କୁ ଦେଖି ଇନ୍ଦ୍ର ଗଣେ ନୟନ ବୁଜିଲେ
ରୂପ ଦେଖି ମୋହ ଯାଇ ଭୂମିରେ ପଡ଼ିଲେ ।
ଚେତ ଉଠିଣ ସେ ଭୟ କଲେକ ଅପାର
ହସିଣ ଶ୍ରୀ ନାରାୟଣ କରନ୍ତି ଉତ୍ତର ।
ଏ କନ୍ୟାକୁ ତୁମ୍ଭେମାନେ ନିଅ ସ୍ୱର୍ଗପୁରୀ
ଉର୍ବଶୀ ନାମ ଆଜଠୁଁ ହୋଇଲା ଏହାର
ସ୍ୱର୍ଗେ ମୋହିତ କରିବ ଯାଇ ପୁରନ୍ଦର
ବଦନରେ ଚଳଯାଅ କର୍ପା ତୁମ୍ଭେ ଡର ।
ଲଜ୍ଜରେ ମୁଖ ପୋଡ଼ିଣ ଦେଲେ ଇନ୍ଦ୍ରଗଣ
ଉର୍ବଶୀ ଘେନ ପ୍ରବେଶି ସ୍ୱର୍ଗରେ ଯାଇଣ ।
ଇନ୍ଦ୍ରଙ୍କ ସମ୍ମୁଖରେ ନେଇ ସେ କନ୍ୟାକୁ ଦେଲେ
ଯାହା ଯାହା ଘଟିଥିଲା ସମସ୍ତ କହିଲେ ।
ତାହା ଶୁଣି ଇନ୍ଦ୍ର ଭୟ କରିଲା ଅପାର
ବନ୍ଦିଲା ନିଷ୍ଠୟ ସେ ପ୍ରଭୁ ଚକ୍ରଧର ।
ଏତେକ ଭାବ ମନରୁ ଭୟ ଛାଡ଼ି ଦେଲା
ଉର୍ବଶୀ କନ୍ୟାକୁ ତହୁଁ ଘେନ ଭୋଗ କଲା ।
ଅପୂର୍ବ ସୁନ୍ଦରୀ ସେହୁ ମୋହେ ସ୍ୱର୍ଗପୁର
ଏଥୁଅନନ୍ତରେ ଶୁଣ ଆହେ ନୃପବର ।
ତହୁଁ ନିଜର ଭୁବନେ ଗଲେ ଇନ୍ଦ୍ର ଗଣ
ବଇକୁଣ୍ଠେ ପ୍ରବେଶିଲେ ତହୁଁ ନାରାୟଣ ।
ଶୁଣିଲ କି ନରପତି ଉର୍ବଶୀ ଚରିତ
ଅଯୋନି ସମ୍ଭବା ସେହୁ ବିଷ୍ଣୁ ମନ ଜାତ ।
ମୁନି କହନ୍ତେ ସନ୍ତୋଷ ହୋଇ ନୃପବର
ବୋଇଲେ କୃତାର୍ଥ ହେଲି ଶୁଣି ତୁମ୍ଭ ଗୀର ।
ଜୟ ଜୟ ଜଗନ୍ନାଥ ଜୟ ରମାପତି .
ଜୟ ଜୟ ରାଧାକାନ୍ତ ଅଗତିର ଗତି ।
ଜୟ ଜୟ କୃପାସିନ୍ଧୁ ଭକ୍ତବତ୍ସଳ
ଭକ୍ତଙ୍କ ନିମନ୍ତେ କେତେ ସହୁଛ ଜଞ୍ଜାଳ ।
ଏବେ କି ସବୁ କଥା ଗଲାଣି ପାସୋରି
ଯେତେ ଡାକିଲେ ନ ଶୁଭେ କର୍ଣ୍ଣକୁ ତୁମ୍ଭର ।
କଳିକାଳ ସ୍ୱତ ଦେଖି ପାଇଲ କି ଦକା
ଠକ ପ୍ରବଞ୍ଚନା ମିଥ୍ୟା ହୋଇଛି ଜୀବକା ।
ଯେ ଯାହା କରୁଛି ସିନା ପାଇନି ତା ଫଳ
ଧର୍ମଶୀଳଙ୍କୁ କମାଇଁ ଏକ ଠୂକେ ଠୂକ ।
କାମପାଳ ଦ୍ୱିଜଙ୍କୁ ହେ ଏ ନୁହେଁ ବିଚାର
ନାରାୟଣ କି ଛାଡ଼ିବ ପାଦକୁ ତୁମ୍ଭର ।

— * —

## କନ୍ଦର୍ପଙ୍କର ସୁଧର୍ମା ସଭାକୁ ଗମନ ଓ ରତିଦେବୀଙ୍କ ଦ୍ୱିତୀୟ ବିବାହ ବିଧାନ

କରଯୋଡ଼ି ପାଦେ ପଡ଼ି ଉତ୍ତରା ତନୟ
ଶୁକ ମୁନିଙ୍କୁ ପୁଛନ୍ତି ହୋଇଣ ବିନୟ ।
ମୋ ଅଭୀଷ୍ଟ ପୂର୍ଣ୍ଣ କର ହେ ମୁନି ପଣ୍ଡିତ
ଉର୍ବଶୀ ଦେବ ସଭାରେ କରୁଥିଲା ନୃତ୍ୟ ।
ତହିଁପରେ କେଉଁକଥା ହେଲା ସେହିଠାରେ
ସେ କଥା ବିସ୍ତାରି କହ ଶୁଣି ଇଚ୍ଛା କରେ ।
ଶୁଣି ଶୁକ ମହାମୁନି ବୋଇଲେ ରାଜନ
ଯାହା ପୁଛାକଲ ଶୁଣ ହୋଇ ସାବଧାନ ।
ତ୍ରିଦଶ ଦେବତାମାନେ ଦେଖୁଛନ୍ତି ନୃତ୍ୟ
ଏମନ୍ତ କାଳେ କନ୍ଦର୍ପ ହେଲେ ଉପସ୍ଥିତ ।
କରେ ପୁଷ୍ପଧନୁ ପୁଣି ପୁଷ୍ପ ଶରାସନ
ମସ୍ତକେ ମୁକୁଟ ଶୋହେ ଝଞ୍ଜା ପଞ୍ଚରଙ୍ଗ ।
ଚନ୍ଦ୍ରକପାଳ ସୁନ୍ଦର ରାଜୀବ ଲୋଚନ
ସୁସଞ୍ଚ ନାସିକା କର୍ଣ୍ଣେ କୁଣ୍ଡଳ ଭୂଷଣ ।
ହୃଦୟରେ ଲମ୍ବି ଅଛି ସ୍ୱର୍ଣ୍ଣ ପଦ୍ମମାଳା
ନବରତ୍ନେ ନବମାଳା ଶୋଭେ ତାଙ୍କ ଗଳା ।

କଟୀରେ କଟୀ ମେଖଳା ସୁବର୍ଣ୍ଣ ଗଢ଼ିତା
ମନ୍ଦାର ପୁଷ୍ପକୁ ଜିଣି ଅଧର ରଞ୍ଜିତା ।
ଡାଳିମ୍ବ ମଞ୍ଜିକୁ ଜିଣି ଦନ୍ତ ଶୋଭାବନ
କେଶାଗ୍ର କଟୀ ଲମ୍ବା ନିତମ୍ବ ଜଘନ ।
ପଦ୍ମନାଳ ସରୀଏକ ହସ୍ତେ ଭୁଜ ବେନି
ପାଦ ପାଣି ପ୍ରକାଶଇ ପଦ୍ମକାକୁ ଜିଣି ।
ମୁକୁତାର ପ୍ରାୟ ଦିଶେ ତାଙ୍କ ନଖମାନ
କୁଞ୍ଚ କୁଞ୍ଚ କେଶ କଳା ଭ୍ରମର ସମାନ ।
ସୁବର୍ଣ୍ଣ ନିର୍ମିତ ବସ୍ତ୍ର ପିନ୍ଧନ୍ତି ଭିଡ଼ି
ରତ୍ନଜଡ଼ିତ ଦୋବନ୍ଧା କାନ୍ଧେ ଅଛି ପଡ଼ି ।
କପାଳରେ ଶୋଭାବନ କସ୍ତୁରୀ ଚିତା
ରୂପ ଦେଖି ମତି ଭ୍ରମ ହେବେ ପତିବ୍ରତା ।
ନାରାୟଣଙ୍କର ପୁତ୍ର ତାଙ୍କ ବର୍ଣ୍ଣସମ
ତ୍ରିଜଗ ଭୁବନେ ସେହୁ ପୁରୁଷ ଉତ୍ତମ ।
ହସ୍ତରେ କଙ୍କଣ ତାଙ୍କ ଚରଣେ ତୋଡ଼ରେ
ଏକା କାଣ୍ଡକେ ଜିଣନ୍ତି ସେହୁ ତିନିପୁର
ଯା ରୂପ ଦେଖି ପୁରୁଷେ ହୋଇଯିବେ ମତ୍ତ
ଚିତ୍ତ ଧନ କାହିଁ ଅବା ରହିବେ ବନିତା ।
ନାହିଁ ନ ଥିବେ ସଂସାରେ ତା ସମ ସୁନ୍ଦର
ଯେଣୁ ଶ୍ରୀହରି କୁମର ପିତା ଚକ୍ରଧର ।
ବ୍ରହ୍ମାଙ୍କ ଜୁଆଇଁ ସେହୁ ରତି ପ୍ରାଣନାଥ
ଏ ବଚନେ ପଚାରନ୍ତି ରାଜା ପରୀକ୍ଷିତ ।
ରତି ସଙ୍ଗେ କାମ ବିଭା ହୋଇଲେ କେମନ୍ତ
ସେହିକଥା କହ ମୋତେ ଆହେ ତପୋବନ୍ତ
ବିଷ୍ଣୁ ପୁରାଣର ବାଣୀ ରତି କାମ ବିଭା
ତବ ମୁଖୁଁ ଶୁଣି ମୋର ହଜୁ ପାପପ୍ରଭା ।
କହନ୍ତି ସେ ଶୁକ ମୁନି ଶୁଣ ନୃପବର
ସାବିତ୍ରୀ କନ୍ୟା ଅଟନ୍ତି ଦକ୍ଷ ବ୍ରହ୍ମାଙ୍କର ।
ସହସ୍ରଗୁଣେ ପରିପୂର୍ଣ୍ଣା ଅତୁଳ୍ୟା ଯୁବତୀ
ସମ ନୋହିବେ ତାହାଙ୍କୁ ଯେତେ ରୂପବତୀ ।
ସେ କନ୍ୟାଙ୍କୁ ପ୍ରଜାପତି ବ୍ରହ୍ମାଙ୍କୁ ଅର୍ପିଲେ
କାଳେ ସେହି ନାରୀ ପୁଣି ଗର୍ଭବତୀ ହେଲେ ।
ପୁତ୍ର ଏକ ଜାତ କଲେ ସେହି ମହାସତୀ
ସେ ପୁତ୍ରର ନାମଟି ହେଲା ବୃହସ୍ପତି ।
ରୂପ ଗୁଣରେ ସୁନ୍ଦର ବ୍ରହ୍ମାଙ୍କର ସମ
ବେଦବିଦ୍ୟା ପାରଙ୍ଗମ ହେଲେ ସେ ଉତ୍ତମ ।

ନାକେ ଦେବଗୁରୁ ହୋଇପାରିଲେ ସେ ପୂଜା
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ମହାରାଜା ।
ଏହିରୂପେ ଚଳି ପୁଣି କେତେକାଳ ଗଲା
ସେ ସାବିତ୍ରୀଦେବୀ ଆଉ ଗର୍ଭିଣୀ ହୋଇଲା ।
ଦୁହିତା ଗୋଟିଏ ଜାତ ହୋଇଲା ସେଥିର
ଶତ ଚନ୍ଦ୍ର ପ୍ରାୟ ଜ୍ୟୋତି ଦିଶଇ ତାହାର ।
ଲକ୍ଷ୍ମୀନାରାୟଣୀ ପ୍ରାୟେ ଦିଶଇ କୁମାରୀ
ପିତାମାତା ପାଳୁଥାନ୍ତି ଅତି ଯତ୍ନ କରି
ରତି ବୋଲି ବ୍ରହ୍ମା ଦେଲେ ସେ କନ୍ୟାର ନାମ
ବିଚାରନ୍ତି ଏ କନ୍ୟାକୁ ବରପଣେ କାମ ।
ନବମ ବରଷ ଯହୁଁ ଦୁହିତାକୁ ହେଲା
ରତନ ବସନ ପିନ୍ଧି ଜଗତ ମୋହିଲା ।
ଖଚିତ ବସନେ ସଦା ହୁଏ ସେ ଭୂଷଣ
ତାକୁ ଦେଖି ମୋହଯାନ୍ତି ଦେବାସୁରଗଣ ।
ଦୁହିତାର ରୂପ ଗୁଣ ଦେଖି ପ୍ରଜାପତି
କନ୍ଦର୍ପ ଦେବଙ୍କୁ ବର ଆଣିଲେ ତୁରିତ ।
ବରବେଶ ହୋଇ ଯହୁଁ ଆସିଲେ ସେ କାମ
ବାଦ୍ୟନାଦେ କମ୍ପି ଗଲା ଯଶୋବନ୍ତୀ ଧାମ ।
ସମସ୍ତ ଦେବତା ଠୁଳ ହୋଇ ବର ଜାତି
ନାତୁଣୀବିଭାକୁ ଡକେ ଦକ୍ଷ ପ୍ରଜାପତି ।
ଧାତା ଆଜ୍ଞାକୁ ନାରଦ ଶିରୋଧାର୍ଯ୍ୟ କରି
ଚଳିଯାଇ ସମସ୍ତଙ୍କୁ ଆଣିଲେକ ବରି ।
ଶ୍ରୀବିଷ୍ଣୁ ଶିବ ବରୁଣ ଆବର କୁବେର
କଶ୍ୟପ ମରୁତ ଶଶୀ ପୁଣି ଦିବାକର ।
ଇନ୍ଦ୍ର ମେଘ ସହିତରେ ବିଜେ ମଘବାନ
ଯଶୋବନ୍ତୀପୁରରେ ଆସି ପୂରିଲ ବହନ ।
ବିଭାର ଉତ୍ସବେ ମିଶି ମଙ୍ଗଳ କରନ୍ତି
ବିବିଧ ପ୍ରକାରେ ତହିଁ ଦୁନ୍ଦୁଭି ବଜାନ୍ତି ।
ବୀଣା ମର୍ଦ୍ଦଳ ବଇଁଶୀ ବାଜେ କରତାଳ
ବ୍ରହ୍ମଲୋକେ ଲାଗିଅଛି ବିଭାର ଗହଳ ।
ଅପସରା ନୃତ୍ୟ ଗୀତେ ସନ୍ତୋଷିଲେ ମନ
କଶ୍ୟପ କଲେ ବରୁଣ ପୂଜାର ବିଧାନ ।
ତାହାଙ୍କର ସମୀପରେ ବ୍ରହ୍ମା ବସିଛନ୍ତି
ଦେବକନ୍ୟା ଜୁଣ୍ଡ ହୋଇ ହୁଳହୁଳି ଦ୍ୟନ୍ତି ।
କନ୍ୟାକୁ ବେଶ କରାଇ ଆଣିଲେକ ନାରୀ
କୋଳେ ବସାଇଲେ ବ୍ରହ୍ମା ଦୁହିତାକୁ ଧରି

ମହାବାକ୍ୟ ଉଚ୍ଚାରଣ ହସ୍ତ ଗଣ୍ଠି ଫେଟିଲେ
ଗଇଁଠାନ୍ତକୁ ପକାଇ ହୋମକାର୍ଯ୍ୟ କଲେ ।
ବରକନ୍ୟାଙ୍କ ମୁକୁଟ ଶିରେ ଶୋଭାବନ
ବଶିଷ୍ଠ ସେ ବେଦ ଘୋଷେ ଲକ୍ଷ୍ମୀନାରାୟଣ ।
ବର ପିତା ସେଣୁକର ଦେବ ତପଧର
ଦୁର୍ବାକ୍ଷତ ନାରୀଗଣ ବନ୍ଦାପନ୍ତି ଶିର ।
ସକଳ ବିଧାନ ସାରି ଘରେ ଚଳିଗଲେ
ବରକନ୍ୟା ପଞ୍ଚଗ୍ରାସି ସୁଧା ପାନକଲେ ।
ବଇକାଳ କନ୍ୟାକାନ୍ତ କରିଲେ ଭୋଜନ
ସେ ସାହା ମର୍ଯ୍ୟାଦା ପାଇ କରିଲେ ଗମନ ।
ସାତଦିନେ ସରିଗଲା ବିଭାର ବେଭାର
ଗୃହକୁ ଚଳିଲେ କାମ ଦେଖି ସମ୍ଭାର ।
ଏହିରୂପେ କେତୁଦିନ ରହୁଁ ବିତିଗଲା
ଋଷି କନ୍ୟା ପିତାଗୃହେ ଉଚ୍ଚେ ବଢି ହେଲା ।
ମୀନକେତନକୁ ବ୍ରହ୍ମା ଆଣିଲେ ହକାରି
ବନ୍ଦାପନା କାର୍ଯ୍ୟ କଲେ ଶ୍ରୀଦଗ୍ଧି ଧରି
ଋଷି କାମ ଦେଖି ଗଲେ ନିଜ ରାଜ୍ୟ ଚଳି
ଗୃହେ ପ୍ରବେଶନ୍ତେ ନାରୀ ଦେଲେ ହୁଳହୁଳି ।
ବନ୍ଦାପନା କରି ଗୃହ ଭିତରକୁ ନେଲେ
ଆନନ୍ଦ ଉତ୍ସବେ ରହି ଦିନ କଟାଇଲେ ।
ଏହା କହି ଶୁକମୁନି ବୋଇଲେ ବଚନ
ଏହିଠାରେ ଶେଷ ହେଲା ବିବାହ ବିଧାନ ।

—✳—

## ବ୍ରହ୍ମାଙ୍କ କନ୍ଦର୍ପଙ୍କର ଫୁଲଶର ପ୍ରୟୋଗ, ବଶିଷ୍ଠଙ୍କର ଜନ୍ମ, କନ୍ଦର୍ପ ଦହନ ଓ ରକ୍ଷଭକ୍ଷଣ ଆବର୍ତ୍ତ

ପୁଣି ରାଜା ପଚାରିଲେ ମୁନିଙ୍କ ପାଶରେ
ମାରି ଠିଆ ହୋଇଥିଲେ ସେ ସଭାତଳରେ ।
ଅନାଦର ପାଇଥିଲେ ହୋଇ କୋପମନ
ତତପରେ କେଉଁ କଥା କଲେ ସେ ବିଧାନ ।
ସେହି କଥା କହି ମୋତେ ସନ୍ତୋଷ କରାଅ
କହନ୍ତି ଶ୍ରୀ ଶୁକମୁନି ଶୁଣ ନୃପରାୟ ।।

ବଶିଷ୍ଠଙ୍କର ପୁଅ ସେହୁ ତେଣୁ ବଡ଼ ଲୋକ
ପୁଣି ମନ୍ମଥ ହକାରେ ଯାଇ ଶୁଣ ଲୋକ ।
ଗୌରବ କଲେ ମୀନା ବସିବେ ସେ ଯାଇ
ନେ ହେଲେ ସେ ସଭାତଳେ ଥିବେ ଉଭା ହୋଇ
ସମସ୍ତ ଦେବତା ନୃତ୍ୟ ଦେଖୁଛନ୍ତି ପୁଣି
କନ୍ଦର୍ପ ଆସିଲେ ବୋଲି ନ ଜାଣନ୍ତି କେହି ।
ଅନେକ ବେଳ ପର୍ଯ୍ୟନ୍ତ ରହି ଉଭା ହେଲେ
କେଉଁ ତିନି ଦେବତା ଏ କେହି ନ ପୁଚ୍ଛିଲେ ।
ଶେଷେ ପାବକର ତଳେ ହନ୍ତୁ ଉଭା ହୋଇ
ଉପରକୁ ଆସ ବୋଲି ନ ବୋଇଲେ କେହି
ଭାବୁଛନ୍ତି ଏ ନ ତାଙ୍କୁ ହୋଇଛନ୍ତି ବାଇ
ଦେଖିଣି ଦନ୍ତପନ୍ତି ଭାଙ୍ଗି ଦେବି ମୁହିଁ ।
ଯେବେ ସମସ୍ତ ଦେବଙ୍କୁ ପେଶିବ ମୁଁ ଶରେ
ଧଇର୍ଯ୍ୟ ଗୁଡ଼ିକ ସବୁ ହେବେ ନାରଖାର ।
ସମସ୍ତଙ୍କୁ ସ୍ଥାନାବସ୍ଥା କରି ନ ଯୋଗାଇ
ଯେତେ ବଡ଼ ହେଲେ ମଧ ଜଣେ ସିନା ମୁହିଁ
ଜଣାଗଲା ଏହାଙ୍କର ମାନ୍ୟ ଧର୍ମ କଥା
ବଶିଷ୍ଠ ଜଗତଗୁରୁ ଅଟନ୍ତି ମୋ ପିତା
ସକଳ ଜୀବଜନ୍ତୁଙ୍କ ହୃଦେ ଛନ୍ତି ବସି
ଆପଣ ମନୁ ବ୍ରହ୍ମାଣ୍ଡ ଅନନ୍ତ ପ୍ରକାଶି ।
ଦୈତ୍ୟ ନିସୂଦନ ପୁଣି ଭକତ ତାରଣ
ସ୍ଥିତି ଉତପତ୍ତି ଯେତୁ ପ୍ରଳୟ କାରଣ ।
ଏହେବତ ପ୍ରଭୁଙ୍କୁ ବି ଲଜ କରାଇବ
ଜଗତ ଗୁରୁଙ୍କୁ ଦର୍ପି ଅପରାଧୀ ହେବ ।
ଏ ଯେ ଶଙ୍କର ଅଛନ୍ତି ଏହି ସଭାମଧ୍ୟେ
ଯାଙ୍କୁ ବନ୍ଦନା କରନ୍ତି ସୁରାସୁର ସିଦ୍ଧେ ।
ସଦା ଏ ଭୋଳାନାଥ ପୁଣି ସଦାନନ୍ଦ
ଅଳପ କଥାରେ ପୁଣି ଆରମ୍ଭନ୍ତି ଦ୍ୱନ୍ଦ ।
କାଞ୍ଚନେ ଦକ୍ଷର ଯାଗ ଭାଙ୍ଗି ଦେବରାଜା
ସେ ପାପରୁ ଆଜଯାଏ ପାନ୍ତି ଲିଙ୍ଗପୂଜା ।
ସେତେକେ ସେ ବ୍ରହ୍ମାବିଷ୍ଣୁ କାହାରେ ନ ମାନନ୍ତି
ସେ କଥା ଜାଣିବେ ତାଙ୍କୁ କେହି ନ ଦିଶନ୍ତି ।
ମୋହର ପିତା ଅଟନ୍ତି କମଳ ଲୋଚନ
ସେ କଥା ଜାଣିବେ ମୋତେ ମୁଁ ତାଙ୍କ ନନ୍ଦନ
ଇନ୍ଦ୍ର ଦେବତା ବୋଲି ସେ ସଭାରେ ବସିଛି
ସ୍ୱଭାବେ ବାଳକ ସେହୁ ବୁଦ୍ଧି ନାହିଁ କିଛି ।

ଜ୍ଞାନ ଥିଲେହେଁ ନଥାସି ହୋଇଛୁ ଅଜ୍ଞାନ
ଅପସରାଠାରେ ସଦା ତାର ଥାଏ ମନ ।
ସେ ଅବା ଜାଣନ୍ତା ନାର ତନେ ଦୃଷ୍ଟି ନାହିଁ
ଆଉ ଯାନେ ସମ୍ମାନ ଯେ ଜାଣିବେ ବା କାହିଁ ।
ଋଷିମାନେ ବସିଛନ୍ତି ସଭାର ଆସ୍ଥାନେ
କାମିନୀ ରସ ନ ଜାଣି ମନ୍ତ୍ର ବ୍ରହ୍ମଜ୍ଞାନେ ।
ଆଉର ଦେବତାମାନେ ଅଟନ୍ତି ବାଳକ
ସେ ଅବା ଜାଣିବେ କେଉଁ ରସ ଆବଶ୍ୟକ ।
ଏହୁ ଯେ ଶ୍ୱଶୁର ମୋର ବସିଛୁ ଆସ୍ଥାନେ
ଜଗତପିତା ବୋଲାଇ ଅଛୁ ନାସା ଧ୍ୟାନେ ।
ଦେଖ ହେ ଯୋଗୀ ପରାଏ ଅଛୁ ଧ୍ୟାନକରି
ମାରିବ ମୁଁ ଶର ଲଜ୍ଜା ପାଉ କୁନ୍ଦଧାରୀ ।
ମୁହିଁ ଏହାର ଜାମାତା ଗୌରବ କରନ୍ତା
ସନମାନ କରି ମୋତେ ପାଖରେ ବସାନ୍ତା ।
ମୋହଠାରେ ଏହାର ତ ଚଇତନ ନାହିଁ
ମନ ଜ୍ଞାନ ଦେଇଅଛୁ ଉର୍ବଶୀର ଠାଇଁ ।
ମୁହିଁ ଆଜ ଦେଖାଇବ ତାହାକୁହିଁ ଲାଜ
ଏତେ ବୋଲି ସନ୍ଧାନ କଲା ଶରରାଜ ।
ଆକର୍ଣ୍ଣ ଓଟାରି ପୁଣି ବନ୍ଧଲାକ ଟାଣି
ଚଳାଇ ସେ ପଞ୍ଚବାଣ ପଞ୍ଚବନ୍ଧୁ ଘେନି ।
ବ୍ରହ୍ମାର ଶରୀରେ ଯାଇଁ ହୋଇଲା ଜଡ଼ିତ
ତତକ୍ଷଣେ ଜ୍ଞାନହୀନ ହେଲେ ଜଗନ୍ନାଥ ।
ବିକୃତ ମସ୍ତିଷ୍କ ହୋଇ ହୋଇଲେ ଚଞ୍ଚଳ
ଧାଇଁ ଯାଇ ଉର୍ବଶୀର ଧଇଲେ ଅଞ୍ଚଳ ।
ସଭା ବହିର୍ଭୂତ କର୍ମ ଦେଖି ଦେବଗଣ
ଚାହିଁଲେ ପରସ୍ପରକୁ ଚକିତ ହୋଇଣ ।
ବୋଇଲେ ଏମନ୍ତ କର୍ମ କଲ ଜଗନ୍ନାଥ
ସାକ୍ଷୀ କି ଦେବସଭାର ନୁହଇ ଉଚିତ ।
ରହ ରହ ଉର୍ବଶୀର ଛାଡ଼ ହେ ଅଞ୍ଚଳ
ଭଲ ମନ୍ଦ ବାଣୀ କାହିଁ ଶୁଣିବା ବାଉଳ ।
ସ୍ୱଭାବେ ଉର୍ବଶୀ ଅଟେ ବ୍ରହ୍ମାଣ୍ଡ ସୁନ୍ଦରୀ
ପଟାନ୍ତର ଦେବାକୁ କି ଅଛି ତିନପୁରୀ ।
କଟିଭାଗ ଦେଖି ହରି ବନେ ପଳାଇଲା
ମୁଖ ଦେଖିଣ ଚନ୍ଦ୍ରମା ଆକାଶେ ଲୁଚିଲା ।
ବର୍ତ୍ତୁଳ କୁଚ ଚଞ୍ଚଳା ହରିଣୀ ନୟନା
ପଦ୍ମନାଳ ଜିଣି ଭୁଜ ସେ ରମ୍ଭା ଜଘନା ।
ସାମୁଲ ପାଦର ନଖ ଜବାପୁଷ୍ପ ଜ୍ୟୋତି
ସର୍ବ ଅଳଙ୍କାର ତାରେ ବିଦ୍ୟୁତ ସମ କାନ୍ତି ।
ଦେବାଙ୍ଗ ବସ୍ତ୍ର କରିଛି ସେହୁ ପରିଧାନ
ସବୁକାଳେ ସେ ବସନ ନୁହଇ ମଳିନ ।
ଅପୂର୍ବ ମାଧୁରୀ ତାର ଚକୋର ଗ୍ରୀବାଣି
ଗମ୍ଭୀର ନାଭିଟି ଜଳ ଭଉଁରୀକ ଜିଣି ।
ମୁକୁତା ପରାଏ ନଖ ଦାନ୍ତ ହୀରାକାନ୍ତି
ସୁବର୍ଣ୍ଣର ବେନ ବାହୁ ପଦ୍ମିନୀ ସ୍ତ୍ରୀ ଜାତି ।
କଣ୍ଠରେ ତାହାଙ୍କ ହୀର ସିମନ୍ତିନୀ ତାର
ତିଳ ପୁଷ୍ପସମ ନାସା ନେତ୍ର କାମଶର ।
ଶୁଦ୍ଧ ସୁବର୍ଣ୍ଣ ପରାଏ ଦେହ ବିରାଜଇ
ଚନ୍ଦ୍ରମାବଦନୀ ବାଳା ଜଗତ ମୋହଇ ।
କଥା ମାଧୁର୍ଯ୍ୟରୁ ଝରଇ ଅମୃତ କି ଜାଣି
ନାହିଁ ନ ଥିବ ତ୍ରିପୁରେ ଏମନ୍ତ ତରୁଣୀ ।
ତାହାକୁ ମୁକ୍ତି ପାରିବ କେଉଁ ସୁରନର
ସ୍ୱଭାବେ କନ୍ଦର୍ପ ପୁଣି ପେଷିଛନ୍ତି ଶର ।
ତେଣୁ ଜଡ଼ା କାଳ ପ୍ରାପ୍ତ କମଳ ଆସନ
କାହାରି କଥାକୁ ନାହିଁ ଭଲମନ୍ଦ ଜ୍ଞାନ ।
ତାହା ଦେଖି ଦେବତାଏ ଗଲେକ ପଳାଇ
ହସି ହସ୍ତ ମୁଖେ ଦେଲେ କମଳାର ସାଇଁ ।
ଶଙ୍ଖ ଚକ୍ର ଗଦା ପଦ୍ମ ଧରି ବିଶ୍ୱମ୍ଭର
ଗରୁଡ଼ ପିଠିରେ ବସି ହୋଇଲେ ବାହାର ।
ଅମରପତି କୁବେର ଜନ୍ତୁପତି ଭୁଲେ
ନିଜ ଭୁବନକୁ ତ୍ରସ୍ତ ବେଗେ କରିଗଲେ ।
ଚନ୍ଦ୍ର ଦିନେଶ ବରୁଣ ନୈଋତ ସମୀର
ବୀର ବିଶ୍ୱଦେବା ଦକ୍ଷ କାଶ୍ୟପ ପ୍ରବର ।
ଯକ୍ଷ ଗନ୍ଧର୍ବ ଇତ୍ୟାଦି ବିଦ୍ୟାଧର ଯେତେ
ଅପ୍ସମାନେ ଗଲେ ଋଷି ସାଧକ ସଙ୍ଗତେ ।
ରମ୍ଭା ଆଦି ଅଷ୍ଟକନ୍ୟା ତହୁଁ ଗଲେ ଭାଜି
ଦେଖି କନ୍ଦର୍ପ ଚଳିଲେ ମନ ହୋଇ ରାଜି ।
ଦେବତା ବୋଲିଣ ଜଣେ ମାତ୍ର ତହିଁ ନାହିଁ
କେବଳ ଅନନ୍ତ ତହିଁ ପାର୍ବତୀଙ୍କ ସାଇଁ ।
ସମସ୍ତ ଦେବେ ପ୍ରବେଶ ଯେ ଯାହା ଭୁବନ
ବ୍ରହ୍ମା ଆଗେ ନୃତ୍ୟକରି ମିଳିଲେ ଈଶାନ ।
ବୋଇଲେ ହେ ବ୍ରହ୍ମା ତୁମେ ହୋଇଲ କି ବାଇ
ଏଡ଼େ ଅକର୍ମ କରିଲ ସୃଷ୍ଟି ପିତା ହୋଇ ।

ଧିକ ତୁମ୍ଭର ଜୀବନ ଲଜ୍ଜା ନ ପାଇଲ
କେଉଁଠି ତୁଚ୍ଛ ଲୋକ ହୋଇ କ୍ଲେଶ ବା ନ କଲ ।
ଧିକ ହେଉ କଲା ତୁମ୍ଭ ବର୍ତ୍ତନୀକ ପଣ
ସ୍ଥିର କନ୍ଦର୍ପ ବାଣରେ ହୋଇଲ ଉଦ୍ବେଣ ।
ହସନ୍ତି ସେ ଟହ ଟହ ନାଚନ୍ତି ପ୍ରମଥ
ବୋଲନ୍ତି ଆଜହୁଁ ନିନ୍ଦା ହେଲା ତ୍ରିପୁର ।
ବ୍ରହ୍ମା ଆଗେ କରତାଳି ମାରନ୍ତି ସେ ଧନ୍ତ
ବୁଦ୍ଧି ନ ପାଉନ୍ତି ବ୍ରହ୍ମା ଜ୍ଞାନଭ୍ରଷ୍ଟ ହୋଇ ।
ଯା ବାଣ ପ୍ରହାରେ ଲୋକ ହୁଅନ୍ତି ଅଜ୍ଞାନ
ଧିକାମେ ପଡ଼ନ୍ତି ତାଙ୍କ ଅଙ୍ଗେ ପଞ୍ଚବାଣ ।
ଜ୍ଞାନଗୋଚର ବ୍ରହ୍ମାଙ୍କ କିଛି ହିଁ ନ ଥିଲା
ଜ୍ଞାନ ଲଜ୍ଜା ଯହୁଁ ଅମି ଉପସ୍ଥିତ ହେଲା ।
ବସ୍ତୁତନ୍ତି ନିନ୍ଦା ମୋତେ ହେଲା ଏ ବିଦଂଶ
ମୁଖ ତଳକୁ ପୋତିଣ ରହିଲେ ବରସେ ।
କନ୍ଦର୍ପ ପାମର ମୋତେ କଲା ହୀନମାନ
ସ୍ୱଭାବେ ମୂର୍ଖ ତାହାର ଗର୍ବରିବ ଜନ ।
ଧର୍ମ ନ ବିଚାରି ମୋତେ କାହିଁକି ସେ କ୍ରୋଧେ
ପଞ୍ଚବାଣ ପ୍ରହାରିଲା ଦେବସଭା ମଧ୍ୟେ ।
ଆଜ ନିଶ୍ଚୟ କରିବି ତାକୁ ଭସ୍ମ ରାଶି
ଯାହା କଲା ଏ ସଭାରେ ପାଇବ କି ବସି ।
ଦେବତାଙ୍କ ମୁଖ ମୁହିଁ ଚାହିଁବି କେମନ୍ତେ
ଏଡ଼େକ ଦୁଃସହ କର୍ମ କଲା କାମା ମୋତେ ।
ମୁହିଁତ ତାଠାରେ କିଛି ଦୋଷ କରିନାହିଁ
ଅକାରଣେ କରାଇଲା ନିନ୍ଦା ସର୍ବଠାଇଁ ।
ଭଲ ଭଲ କରି ତହିଁ ହେଲେ ମୃତ୍ୟୁ ଭୁଲି
ଲଜ୍ଜା ସମୁଦ୍ରେ ଭାସିଲେ ଦୁଃଖେ ଲୋକପାଳ ।
ଦେବସଭା ମଧ୍ୟେ ମୋତେ କଲୁ ହୀନମାନ
ଆଜ ନଷ୍ଟେ କନ୍ଦର୍ପରେ ଗଲା ତୋ ଜୀବନ ।
ଦୁହିତା ବିଧବା ହେଲେ ହେଉ ଆଜଠାରୁ
ତ୍ରୈଲୋକ୍ୟ ଶତ୍ରୁ କନ୍ଦର୍ପ ନଷ୍ଟେ ଆଜ ମରୁ ।
ଯାଅରେ କନ୍ଦର୍ପ ତୁହି ହୁଅ ଭସ୍ମରାଶି
ସେହିକ୍ଷଣି ସେ ଭସ୍ମ ହେଲା ନିଜ ଧୃଦେ ବସି ।
ଘୃତ ମିଶ୍ରିତ ବସନ ପ୍ରାପ୍ତେ ଜଳିଗଲା
ଭସ୍ମ ଗଦା ଗଦା ହୋଇ ଗୃହରେ ପଡ଼ିଲା ।
ବ୍ରହ୍ମା ଶାପରେ ମଦନ ହେଲା ଭସ୍ମୀଭୂତ
ଏମନ୍ତକାଳେ ଉର୍ବଶୀ ଜାତ କଲା ସୁତ ।

ବ୍ରହ୍ମା ସମ୍ମୁଖେ ବସିଲ ଅଛ ଭଗବନ୍ତ
ଦୃନ୍ତ ଦେଖିଣ ହସନ୍ତି ଦେବ ବିଶ୍ୱନାଥ ।
ତାହାଦେଖି ମହାକୋପ କଲେ ପ୍ରଜାପତି
ବୋଇଲେ ରୁଦ୍ର ତୁ ଅଟୁ ବଡ଼ ଦୁଷ୍ଟମତି ।
ମୁହିଁ ଲଜ୍ଜାରେ ହୋଇଛି ମରଣ ସମାନ
କେତେ ଧର୍ମ ନାଶ ହେଉଁ କର୍ମାରେ ଈଶାନ ।
ତୁହି କର୍ମାଇ ରହିଲୁ ତୋତେ ଲାଜ ନାହିଁ
ସମସ୍ତ ଦେବତା ଗଲେ ଏଠାରୁ ପଳାଇ ।
ଈଶ୍ୱର ବୋଲନ୍ତି ଧିକ ତୋତେ ପ୍ରଜାପତି
କଥା କହୁ ଲଜ୍ଜା ତୋତେ ନାହିଁରେ ଦୁର୍ମତି
ଏତେ ଦେବସଭା ମଧ୍ୟେ କଲୁ ତୁ ଏମନ୍ତ
ଅଧୁନିକ ହୋଇଥିଲୁ ପୂର୍ବ କଲୁ ଜାତ ।
ଅନେକ ଝିଙ୍ଗାସ ଯହୁଁ କଲେ ବିଲୋଚନ
ନ ସହି କହିଲେ କୋପ ଚତୁର ଆନନ ।
କୋପେ ନିଃଶ୍ୱାସ ଛାଡ଼ିଲେ ଯହୁଁ ପ୍ରଜାପତି
ଭକ୍ଷ ନାମେ ପୁରୁଷେକ ହେଲା ଉତପତ୍ତି ।
ଗଗନମଣ୍ଡଳେ ତାର ଲଗିଅଛି ମାଥ
କନ୍ଧରେ ପଇତା ତାର ଶୋଭେ ବ୍ରହ୍ମସୂତ ।
ପାଷାଣର ସ୍ତମ୍ଭ ପ୍ରାୟ ଦିଶେ ବେନି ପାଣି
ଘୋ ଘୋ ଗର୍ଜନ କରଇ ତ ଶିରକୁ ଝୁଣି ।
ମହା ବୃକ୍ଷପ୍ରାୟ ମୋଟ ତାର ବେନିପାଦ
ତା ଘୋର ଗର୍ଜନେ ସର୍ବେ ହୋଇଲେ ସ୍ତବ୍ଧ
ଫର ହର ନଶ ଉଡ଼େ ବିକଟ ଦଶନ
ଯଜ୍ଞ ଅଗ୍ନି ପ୍ରାୟେ ଦିଶେ ତା ଦୁଇ ନୟନ ।
ରକତ ବସନେ ଶୀର ହୋଇଛି ଭୂଷଣ
ନିର୍ଘାତ ପରାଏ କରି ରଗଡ଼େ ଦଶନ ।
ମୁକୁଟ କୁଣ୍ଡଳ ଦେହେ ରତନର କାନ୍ତି
ପିଙ୍ଗଳ ଅଗ୍ନି ପରାଏ ବିରାଜଇ ଜ୍ୟୋତି ।
ତାମ୍ର ବର୍ଣ୍ଣ ତନ ପ୍ରାୟ ବୁଲାଏ ନୟନ
ପର୍ବତ ଗୁହା ଯେସନ ଦିଶେ ବେନିକର୍ଣ୍ଣ ।
ନାସିକା ନିଶ୍ୱାସ ବାୟୁ ପ୍ରବଳ ବତାସ
ଜଳ ଲହ ଲହ କରେ ଖାଙ୍କର ତା କେଶ ।
ତୀକ୍ଷ୍ଣ ତୀକ୍ଷ୍ଣ ନଖମାନ ବିକଟ ମୂର୍ତ୍ତି
ଦେବାସୁର ଦେଖି ତାକୁ କରିବେ ଯେ ସ୍ତୁତି ।
ବ୍ରହ୍ମାଙ୍କର ମୁଖ ଚାହିଁ ବୋଲେ ବ୍ରହ୍ମଭୂତ
କି କାର୍ଯ୍ୟ କରିବି ତୋର କହ ଜଗନ୍ନାଥ ।

କାହ୍ନିଅଛୁ ଶତ୍ରୁ ନଚାର ବେଗକଣ୍ଠ କହ
ବ୍ରହ୍ମାଣ୍ଡ ଭିତରେ କାହିଁ ଅଛୁ ଛ ଇ ଦେହ ।
ବ୍ରହ୍ମାଙ୍କ ଶିତା ମୋହର ଜାତ କଲୁ ମୋତେ
କହ ତୋର ଶତ୍ରୁ କାହିଁ ମାଇବ ତୁରିତେ ।
ତ୍ରିକଲାକ ବୋଇଲେ ଶୁଣରେ ନନ୍ଦନ
ଏ ଯୋଗ ଚ ଟି ଲାଗି ହୋଇ ବିଲେଚନ
ହାତମାନରେ ଭୂଷଣ ଏ ଡମରୁଧର
ବିନାଶ କଲଣି ମୋତେ ଅପାରୁ ଅପାର ।
ଏହାକୁ ଭେ ପୁତ୍ର ତୁମ୍ଭେ ବେଗେ ଯାଇ ମାର
ଏହି ସଦାନନ୍ଦ ମୋର ହୋଇଛୁ ଉଗାର ।
ବ୍ରହ୍ମା ବଚନେ ଧାଇଁଲ ସେହୁ ବ୍ରହ୍ମଭୂତ
ଝିପୁକର ପଳାଇଲେ ଦେବ ବିଶ୍ୱନାଥ ।
ଗୋଡ଼ାଇ ଅଛୁ ସେ ଭୂତ ମହା କୋପଭରେ
ପବନହୁଁ ବେଗେ ହର ପଳାନ୍ତି ଭୟରେ ।
ସ୍ୱର୍ଗରେ କୌଣସି ସ୍ଥାନେ ନ ପାଇଲେ ରକ୍ଷା
ମର୍ତ୍ତ ମଣ୍ଡଳେ ପଶିଲେ ପାତାଳଙ୍କ ସାଇଁ ।
ବ୍ରହ୍ମ ଭୂତ ଗୋଡ଼ାଇଛୁ ତାଙ୍କୁ ଲାଗି କରି
ଘଡ଼କେ ବୁଲି ଆସିଲେ ସବୁ ବସୁନ୍ଧରା ।
ମହାଭୟେ ସଦାଶିବ ପଶିଲେ ପାତାଳେ
ପଛେ ପଛେ ଗୋଡ଼ାଇଛୁ ବ୍ରହ୍ମଭୂତ ବଳେ ।
ପାତାଳୁ ପଳାଇ ସେ ଯେ ସୁତଳେ ପ୍ରବେଶ
ବଇକୁଣ୍ଠ ଭୁବନକୁ ଗଲେ ବିଶ୍ୱବାସ ।
ଡାକଇ ସେ ମହାଭୂତ ଯିବୁ ଆଜ କାହିଁ
ପଳାଉନ୍ତି ମହାରୁଦ୍ର ପଛକୁ ନ ଚାହିଁ ।
ବିଷ୍ଣୁ ସନ୍ନିଧିକୁ ଯାଇ ପ୍ରବେଶ ବହନ
ଦେଖିଲେ ସ୍ୱାମୀ ଅଛନ୍ତି ହୋଇ ଯୋଗାସୀନ ।
ସହସ୍ର ସଂଖ୍ୟକ ଶିର ସହସ୍ରେକ ପାଦ
ଉର୍ଦ୍ଧ୍ୱାସନେ ସର୍ପୋପରେ ଛନ୍ତି ପଦ୍ମନାଭ ।
ଦୁଇସହସ୍ର ବର୍ଣ୍ଣି ଦୁଇ ସହସ୍ର ନୟନ
ନାନା ରତ୍ନର ମୁକୁଟ ଶିରେ ଶୋଭିବନ ।
ଶଙ୍ଖଚକ୍ର ଗଦାପଦ୍ମ ତେଜ ଯେହ୍ନେ ଭାନୁ
ସେ ଦୁଇ ସହସ୍ର ଭୁଜ ଲମ୍ବିଛୁ ଆଜାନୁ ।
ପୀତାମ୍ବର ପରିଧାନ କଟିରେ ପଇତା
କଳେବର ଷୋଡ଼ଶ ମାସ ସୂର୍ଯ୍ୟ ତେଜ ଜତା ।
ହୃଦୟରେ ବନମାଳା ପଞ୍ଚରତ୍ନ ଲେଳା
ଦିଶଇ ଶ୍ୱେତ ମେଘରେ ଯେସନେ ବିଜୁଳି ।

ଅଙ୍ଗୁଷ୍ଠିରେ ନାନାରତ୍ନ ମୁଦ୍ରି ବିରାଜନ୍ତି
ଅନାଦି ନିରଞ୍ଜନଙ୍କ ଅବ୍ୟକ୍ତ ମୂରତି ।
ପୁରାଣ ପୁରୁଷ ସେହୁ ପ୍ରାଣୀଙ୍କ ଜୀବନ
ତେଜ ପ୍ରକାଶଇ ତାଙ୍କ ଶରୀର ଭବନ ।
ଲକ୍ଷ୍ମୀ ଗଡ଼ାଗଡ଼ି ନାହିଁ ଚନ୍ଦ୍ର ସୂର୍ଯ୍ୟଙ୍କର
ରତ୍ନମାନଙ୍କ ତେଜରେ ନାଶୁଛି ଅନ୍ଧାର ।
ରୁଦ୍ରଙ୍କୁ ସମ୍ମୁଖରେ ଦେଖି ହୋଇଲେ ଚକିତ
ପଚାରନ୍ତି କାହା ଭୟେ ଧାଉଁ ବିଶ୍ୱନାଥ ।
ତୋତେ ବା ଡରାଇବାକୁ କେ ଅଛି ସଂସାରେ
ଶୁଣିଣ କହନ୍ତି ଶିବ ଅତି ବିନୟରେ ।
ଶ୍ରୀଦେବ ହେ ନିରଞ୍ଜନ ଶୁଣ ମୋର କଥା
ଭବ ଶୀଳୁ ବଢ଼ିଅଛି କଲି ଚଉଥା ।
ମୁଣ୍ଡ ଛିପହାସ କଲି ତାହାଙ୍କ ଅଗ୍ରତେ
ପୁରୁଷେକ ଜାତକରି ମାରନ୍ତି ସେ ମୋତେ ।
ଏତେକ କହନ୍ତେ ସାଇଁ ମିଳେ ସେ ପୁରୁଷ
ତାକୁ ଦେଖି ରୁଦ୍ରଦେବ କଲେ ମହାତ୍ରାସ ।
ନାରାୟଣ ପିଠି ପଛେ ଲୁଚିଲେ ପଳାଇ
ବିଷ୍ଣୁ ସମ୍ମୁଖରେ ପୁରୁଷ ମିଳିଲାକ ଯାଇ ।
ଦେଖିଲେ ମହାପ୍ରଭୁ ତା ରୂପ ଭୟଙ୍କର
ରହ ରହ ବୋଲି ତାକୁ ସମ୍ମାର୍ଜନ୍ତି କର ।
ନ ମାନି ସେ ବ୍ରହ୍ମଭୂତ ପଶିଲା ଧସାଇ
ତାହା ଦେଖି କୋପ କଲେ କମଳାଙ୍କ ସାଇଁ ।
କୋପେ ନିଶ୍ୱାସ ଛାଡ଼ିଲେ ହୁହୁଙ୍କାର କରି
ଜନ୍ମିଲା ପୁରୁଷ ଏକ ଘୋର ନାଦ କରି ।
ବ୍ରହ୍ମଭୂତ ପ୍ରାୟ ଦିଶେ ତାର ରୂପ ବର୍ଣ୍ଣି
ଅନାଦି ବୋଇଲେ ସ୍ୱାକୁ କରରେ ନିଧନ ।
ତକ୍ଷଣେ ବିଷ୍ଣୁଙ୍କ ଦୂତ ଧଇଲା ଆକର୍ଷି
ବ୍ରହ୍ମାଙ୍କ ନନ୍ଦନ କୋପେ ତା ସଙ୍ଗତେ ମିଶି ।
ଧରାଧରି ପଡ଼ାପଡ଼ି ମାରି ଭୁଜ ଦଣ୍ଡ
ପଦାଘାତେ କମ୍ପମାନ ସପତ ବ୍ରହ୍ମାଣ୍ଡ ।
ତଳ ଉପର ହୁଅନ୍ତି ଉପରେ କେ ତଳେ
ଧମାନ ଅଟନ୍ତି ଦୁହେଁ ନ୍ୟୂନ ନାହିଁ ବଳେ ।
ମାରନ୍ତି ସେ ବଜ୍ରମୁଷ୍ଟି ନିର୍ଘାତିକୁ ବଳ
ଶରୀର ବିଦାରି ଦ୍ୟନ୍ତି ନଖକୁ ହାଣୋଳ ।
ଦୁହିଁଙ୍କର ଶରୀରରୁ ବହେ ଶ୍ରମ ଝାଳ
ଗର୍ଜନ୍ତି ସେ ଘନଘନ କରି ମହାରୋଳ ।

ପାଦେ ଉନ୍ମାଉନ୍ମ ହୋଇ ହୋନ୍ତି ଲଡ଼ାଲଡ଼ି
କର୍ଣ୍ଣାଟ ଶବଦ ହୁଏ ତଳେ ଗଲେ ପଡ଼ି ।
ଦୁହିଁଙ୍କ ଶରୀର ରକ୍ତେ ହେଲେ ରଙ୍ଗମୟ
ପାନବଣ୍ଡ ଦୁହେଁ ସେ ସମାନ ଜଣାଯାଏ ।
ଏମନ୍ତ ସହସ୍ର ବର୍ଷ ଦୁହେଁହିଁ ଯୁଦ୍ଧ କଲେ
କେହିକାହାରିକ ଆଜ ଜିଣି ନ ପାରିଲେ ।
ଘୋର ଯୁଦ୍ଧେ ଦୁହେଁ ଯହୁଁ ହେଲେ ଆଶକ୍ତ
ତାଙ୍କୁ ସ୍ୱାହିଁ ବୋଲନ୍ତି ଅନାଦି ଅଚ୍ୟୁତ ।
ଶୁଦ୍ଧରେ ପୁରୁଷ ଦୁଇ ଆମ୍ଭ ବୋଲକର
ତୁମ୍ଭେ ଦୁଇଜଣ ଆଜ ନ କର ସମର ।
ଏ ଜନ୍ମେ ତୁମ୍ଭ ଦୁହିଁଙ୍କ ହାର ଜିଣ ନାହିଁ
ଆମ୍ଭ ବୋଲେ ତୁମ୍ଭେ ଦୁଇ ରହ କ୍ଷାନ୍ତ ହୋଇ
ଏ ଯୁଗ ଅନ୍ତ ଅନେକ ଯୁଗ ବହିଯିବ
ମୃତ୍ୟୁପୁରେ ଯାଇ ଆନ ଜନମ ହୋଇବ ।
ସେ ଜନମେ ତୁମ୍ଭର ଯେ ହେବ ହାର ଜିଣ
ଯାହା କହୁଅଛୁ ଋଷ ଭଷ ତାହା ଶୁଣ ।
ଦେବତା ସଙ୍ଗେ ଏବେ ସ୍ୱର୍ଗପୁରେ ରହ
ବେଗେ ଯୁଦ୍ଧ ଛାଡ଼ିଦେଇ ଆନନ୍ଦରେ ଯାଅ ।
ଯହୁଁ ଶ୍ରୀମାନ୍ ନାରାୟଣ କହିଲେ ଏ ବାଣୀ
ଯୁଦ୍ଧ ଛାଡ଼ି ଶାନ୍ତ ଭାବ ହେଲେ ବୀରମଣି ।
ଓଳଗି ମେଲାଣି ମାଗି ସ୍ୱର୍ଗପୁରେ ଗଲେ
ଶାନ୍ତ ରୂପେ ଦେବତାଙ୍କ ସଙ୍ଗରେ ରହିଲେ ।
ଯହୁଁ ଶାନ୍ତ ହୋଇଗଲେ ସେହୁ ବେନି ବୀରେ
ରୁଦ୍ର ଆସିଣ ମିଳିଲେ ବିଷ୍ଣୁଙ୍କ ଛାମୁରେ ।
ଶିରେ କରଯୋଡ଼ି ଶିବ ଆରମ୍ଭିଲେ ସ୍ତୁତି
ଜୟ ଜୟ ନାରାୟଣ ଅନନ୍ତ ମୂରତି ।
ନମୋ ନମୋ ନିରଞ୍ଜନ ଅବର୍ଣ୍ଣ ଅଚ୍ୟୁତ
ନମସ୍ତେ ହେ ଦେବ ବ୍ରହ୍ମ ସୃଷ୍ଟି ଆଦି ଅନ୍ତ ।
ନମସ୍ତେ ହେ ଦେବ ବ୍ରହ୍ମ ରୂପୁ ଭୟଗଞ୍ଜ
ନମସ୍ତେ ହେ ଦେବ ବ୍ରହ୍ମ କାଳଭୟ ଭଞ୍ଜ ।
ବ୍ରହ୍ମଭୂତ ଭୟେ ମୁହିଁ ହୋଇଥିଲି ଦଗ୍ଧ
ଚଉଦ ବ୍ରହ୍ମାଣ୍ଡେ ସ୍ଥାନ ନ ମିଳିଲା କାହିଁ ।
ନମସ୍ତେ ହେ ବନ୍ଧୁପାଦ ପ୍ରଳୟାନ୍ତକାରୀ
ରଖିଲୁ ତୁ ମୋର ପ୍ରାଣ ଭୟ ଜାତ କରି ।
ନମସ୍ତେ ଅବ୍ୟୟ ତୁମ୍ଭେ ଜୟ ଶୂନ୍ୟରୂପୀ
ଚଉଦ ବ୍ରହ୍ମାଣ୍ଡେ ତୁମେ ଅଛ ଦେବ ବ୍ୟାପୀ ।

ନମସ୍ତେ ହେ ସ୍ଥୂଳରୂପ ନମୋ ଶୂନ୍ୟମୟେ
ଅଜପା ଜପିଣ ମୁନି ହୃଦପଦ୍ମେ ଧ୍ୟାୟେ ।
ତୁହି ତ ପୃଥିବୀ ପୁଣି ତୁ ଅଟୁ ସାଗର
ତୁହି ଶେଷଦେବ ତୁହି ଶଶୀ ଦିବାକର ।
ତୁହି ବିଷ୍ଣୁ ତୁହି ରୁଦ୍ର ତୁହି ସୁରପତି
ସଂସାର କାରଣ ତୁହି ତୁହି ପ୍ରଜାପତି ।
ତୁହି ସଂସାରର ଆଦି ତୁହି ପିତାମାତା
ଲୋକତାରିକରତା ତୁହି ତୁହି କର୍ମଦାତା ।
ଅଖଣ୍ଡ ନିରଞ୍ଜନ ତୁ ନମୋ ପୂର୍ଣ୍ଣବ୍ରହ୍ମ
ଭକତଙ୍କ ରକ୍ଷାପାଇଁ ପାଦପାଣି ଚିହ୍ନ ।
ସୃଷ୍ଟି ପାଳିବାକୁ ପ୍ରଭୁ ନାନାରୂପ ଧରୁ
ଅଗ୍ନି ବାୟୁ ଯମ ତୁହି ବରୁଣ ସୁମେରୁ ।
ସ୍ତୁତି ସାରି ପଡ଼ିଲେ ସେ ଯାଇ ପାଦତଳେ
ଟେକି ଧରିଣ ଅନାଦି ବସାଇଲେ କୋଳେ ।
ନିଜପୁରେ ଯିବାପାଇଁ ମେଲାଣି ସେ ଦେଲେ
ଆନନ୍ଦରେ ସଦାଶିବ କପିଳାସ ଗଲେ ।
ଏବେ ସାବଧାନେ ଶୁଣ ଆହେ ନୃପବର
ଉର୍ବଶୀ ଜାତ କରିଛୁ କେଉଣ କୁମର ।
ସୁଧର୍ମା ସଭାରେ ପଡ଼ି ରହିଛୁ ନନ୍ଦନ
ଲଜ୍ଜାରେ ଉର୍ବଶୀ ନମ୍ର କରିଛୁ ବଦନ ।
ବ୍ରହ୍ମାର ମୁଖକୁ ଚାହିଁ ବୋଇଲା ଅପ୍ସରା
କି ବୁଦ୍ଧି କରିବି କହ ଆହେ ତୁଣ୍ଡଧାରୀ ।
ବ୍ରହ୍ମା ବୋଇଲେ ତୁ ଏବେ ପୂର୍ବପରି ହୁଅ
ନ ଦିଶୁ ତୋହର ଗାତ୍ର ପ୍ରସୂତର ପ୍ରାୟ ।
ଆଜ୍ଞା ପ୍ରମାଣେ ତା ଗାତ୍ର ପୂର୍ବପରି ହେଲା
ଯାତ୍ରୁଁ ଶତଗୁଣେ ତାର ରୂପ ପ୍ରକାଶିଲା ।
ରୂପ ଦେଖିଣ ଉର୍ବଶୀ ସନ୍ତୁଷ୍ଟ ହୋଇଲା
ଏ ପୁତ୍ର କଣ କରିବ ବୋଲି ପଚାରିଲା ।
ବ୍ରହ୍ମା ବୋଇଲେ ଆମ୍ଭର ଏ ପୁତ୍ର ଅଟଇ
ଏହାକୁ ପାଳିବା ପାଇଁ ତୋର ଲୋଡ଼ା ନାହିଁ ।
ଏହି କୁମର ମୋହର ସଙ୍ଗତରେ ଥିବ
ବ୍ରହ୍ମଋଷିମାନଙ୍କରେ ଗଣିତ ହୋଇବ ।
ଅମର ହୋଇଣ ଥାଉ ଏ କୁମରମଣି
ଦେଖିବୁ ବେଦ ପଢ଼ିବ ତୋ ପୁତ୍ର ଏକ୍ଷଣି ।
ଉଠରେ କୁମର ବେଗେ ନବଯୁବା ହୁଅ
ଆଜ୍ଞା ପାଇଣ ତକ୍ଷଣେ ଉଠିଲା ସେ ପୁଅ

ଷୋଡ଼ଶବର୍ଷ ବୟସ୍ୟେ ଦିଶିଲା ସେ ବାଳ
ମଦନ ପ୍ରତିମା ଠାରୁ ଅଟଇ ସୁଢ଼ଳ ।
ବଶିଷ୍ଠ ବୋଲିଣ ବ୍ରହ୍ମା ତାର ନାମ ଦେଲେ
ନିଜ ଗୃହକୁ ଘେନିଣ ଚହୁଁ ଚଳିଗଲେ ।
ଉର୍ବଶୀ ରୂପସୀ ଗଲା ତାହାର ପୁରକୁ
ବ୍ରହ୍ମା ପ୍ରବେଶିଲେ ଗୃହେ ଘେନିଣ ପୁତ୍ରକୁ ।

— * —

## କନ୍ଦର୍ପର ପୁନର୍ଜୀବନ ପ୍ରାପ୍ତି

ପରୀକ୍ଷିତ ପଚାରିଲେ ଶୁଣ ମୁନିବର
ଲୋକପାଳ ଗୃହେ ଗଲେ ଘେନିଣ କୁମର ।
ଆଉ କେଉଁ କଥା ଅଛି ଏ ବିଷ୍ଣୁପୁରାଣେ
ସେହି କଥା କୁହ ମୋତେ କର୍ଣ୍ଣରେ ମୁଁ ଶୁଣେ
ଏ ବିଷ୍ଣୁପୁରାଣ କଥା ଅତି ସୁଧାମୟ
ଶୁଣିଲେ ସେ କଥା ମୋର ପାପ ହେବ କ୍ଷୟ ।
ରାଜାଙ୍କ ବଚନ ଶୁଣି ଶୁକ ମୁନିବର
କହନ୍ତି ଯାହା ହୋଇଲା ଶୁଣ ସମାଚାର ।
ବ୍ରହ୍ମାଙ୍କର କୋପାନଳେ କାମ ଭସ୍ମ ହେଲା
ତା ଦେଖିଣ ରତିଦେବୀ ବହୁ ଶୋକ କଲା ।
ଆହା କାନ୍ତ ବୋଲି ଯାଇ ଭସ୍ମ ଅଣ୍ଟାଳଇ
ବୋଇଲା ଅପୂର୍ବ ଦେହ ତୋର ଗଲା କାହିଁ ।
ମୋହର ତୁ ପ୍ରାଣନାଥ ନାମ ତୋର ମାର
ଅମର ଦେହକୁ କିଏ କଲା ଛାରଖାର ।
ବିଷ୍ଣୁଙ୍କର ପୁତ୍ର ତୁହି ପୁଷ୍ପ ଧନୁର୍ଦ୍ଧାରୀ
ତୋର ମହିମା ବିଖ୍ୟାତ ଅଟେ ତିନିପୁରୀ ।
ହେ ପ୍ରାଣନାଥ ତୋତେ ମୁଁ ବାହୁନିବି କେସ
କୁସୁମ ସମାନ ଦେହ କନ୍ଦର୍ପ ପୁରୁଷ ।
ମୋତେ ଦେଖିଣ କହନ୍ତି ସୁଲକ୍ଷଣୀ ନାରୀ
ବିଧବା ଅବସ୍ଥା ମୋତେ ଗଲୁ ଦେଇକରି ।
କାହାକୁ ଘେନି ସ୍ୱାମୀ ହେ ଖେଳିବି ମୁଁ ପଶା
କୁସୁମ ଘେନି ବାନ୍ଧିବ କିଏ ମୋର ଖୋସା ।
କାହାକୁ ଘେନିଣ ମୂର୍ଚ୍ଛି କରିବି ଭ୍ରମଣ
କିଏ ସେ ବସନ୍ତ କହିବ ସଙ୍ଗରେ ଥାଇଣ ।
ତୋହର ସଙ୍ଗରେ ନାଥ କଥା କହୁଥିଲେ
ଇନ୍ଦ୍ରର ଶୋଭା ଚନ୍ଦ୍ରିକ ନ ମଣଇ ଭୁଲେ ।
ହସିଲେ ଅମୃତ ସ୍ୱରେ ମଧୁର ଭାଷାଣି
କେମନ୍ତେ ତୁ ନାଶଗଲୁ ଧାନୁଷ୍କି ଅଗ୍ରଣୀ ।
ଅମର ଦେହଟି ତୋର କେହ୍ନେ ହେଲା ହତ
କେବଣ ବାପୁଡ଼ା ତୋତେ କଲକ ନିପାତ ।
କାହାର ସଙ୍ଗରେ ସ୍ୱାମୀ କଲୁ ତୁ ବିବାଦ
ପବନ ଦେହକୁ ତୋର ପଡ଼ିଲା ପ୍ରମାଦ ।
ବ୍ରହ୍ମାର ଦୁହିତା ହୋଇ ବିଧବା ହୋଇବି
ଦେବକନ୍ୟାଙ୍କ ମୁଖକୁ କେମନ୍ତେ ଚାହିଁବି ।
କରନ୍ତି ରୋଦନ ଦେବୀ ପତି ଗୁଣି ଗୁଣି
ବସନ୍ତକାଳେ ଶୁଭଇ ଯେସନେ ପିକବାଣୀ ।
ତେସନ୍ତି ଯେ ପତାଳର ଶୁଭଇ ଶ୍ରୁତିକ
ପିତା ଗୃହେ ବାହାରିଲେ ଘେନିଣ ଦାସୀଙ୍କି ।
ଦାସୀମାନେ ରହିଛନ୍ତି ଆଗରେ ପଛରେ
ଯାଇ ପ୍ରବେଶ ହୋଇଲେ ପିତା ଭବନରେ ।
ମାତାଙ୍କୁ ଘେନିଣ ସଙ୍ଗ ପଡ଼ି ପାଦତଳେ
ମସ୍ତକରେ କର ଦେଇ କାନ୍ଦନ୍ତି ବିକଳେ ।
ଝିଅ ସେ ତୋଳି ଧରନ୍ତି ବିରସ ହୋଇଣ
ଦାସୀଗଣଙ୍କୁ ପୁଚ୍ଛନ୍ତି ତାର ବିବରଣ ।
ଦାସୀଏ କହନ୍ତି ଧୀରେ ଶୁଣ ଠାକୁରାଣୀ
ଅପୂର୍ବ ଚରିତ ଏହା ନ ଦେଖି ନ ଶୁଣି ।
ଜୁଆଇଁ ଈଶ୍ୱର ଆଜ ଗୃହେ ବସିଥିଲେ
ଅଦଭୁତ ଦେଖି ଦେଖି ସେହି ଜଳିଗଲେ ।
କେବଣ ଚରିତ ଏହା ନ ଜାଣୁ ଗୋ ସତି
ସେଥିପାଇଁ କି ରୋଦନ କରୁଛନ୍ତି ରତି ।
ତାହା ଶୁଣି ସାବିତ୍ରୀ ପ୍ରବଧ ହୋଇଲେ
ବେନି ନୟନରୁ ଲୋତକ ପକାଇ କାନ୍ଦିଲେ ।
ଚକିତ କୋଳରେ ଧରି ଝିଅରେ ବୋଲନ୍ତି ।
ପିତା ଆଇଲେ ଏ କଥା ଜାଣିବା ବୋଲନ୍ତି
କିଏ ସେ ମୋ କନ୍ଦର୍ପକୁ କରିଲା ନିଧନ
ତିନି ବ୍ରହ୍ମାଣ୍ଡେ କେ ଅଛି ଏଡ଼େ ବଡ଼ ଜଣ ।
ବ୍ରହ୍ମାଣ୍ଡର ଜୁଆଇଁ ସେ ଶ୍ରୀହରି କୁମର
ତାକୁ ନାଶ କଲା କିଏ ଏଡ଼େ ବଳୀୟାର ।
ଜଣା ପଡ଼ିଲେ କି ସେହୁ ପ୍ରାଣ ପାଇବିକ
ଏମନ୍ତ ସମୟେ ଯାଇ ମିଳିଲେ ଦଇବ ।

ଦୁହିତାଙ୍କୁ ଦେଖି ବ୍ରହ୍ମା କିଛି ନ ବୋଇଲେ
ତାର କାନ୍ଦିବାର ଦେଖି ପିଠି ଦେଇଗଲେ ।
ଯୋଗ ବଳରେ ସାବିତ୍ରୀ ଜାଣିଲେ ଯେ ତାହା
କନ୍ଦର୍ପକୁ ଭସ୍ମ କଲେ ନିଜେ ଅଷ୍ଟବାହା ।
ସାବିତ୍ରୀ ଯାଇଁ ପୁଛନ୍ତି ବ୍ରହ୍ମାଙ୍କର କତି
କେମନ୍ତେ ରତି କନ୍ୟାର ନାଶଗଲା ପତି ।
ଏହା ତୁମ୍ଭେ ଜାଣ କିଂହ କମଳ-ଆସନ
ସାବିତ୍ରୀଙ୍କୁ ଚାହିଁ ବ୍ରହ୍ମା ବୋଲନ୍ତି ବଚନ ।
ପଚାରିଲେ ଯେବେ ମୋତେ କହିବା ସେ କଥା
ଯେବଣ ଚରିତ ହେଲା ଶୁଣ ତା ବ୍ୟବସ୍ଥା ।
ସୁଧର୍ମା ସଭାକୁ ଯାଇଁ ବସିଥିଲି ମୁହିଁ
ବଶିଷ୍ଠ ରୁଦ୍ର ଚନ୍ଦ୍ର ସୂର୍ଯ୍ୟ ଆଦି ଥିଲେ ତହିଁ ।
କୁବେର ବରୁଣ ଚନ୍ଦ୍ର କଶ୍ୟପ ସହିତେ
ଦକ୍ଷ ପ୍ରଜାପତି ଋଷି ସାଧକାଦି ଯେତେ ।
ଯକ୍ଷ ଗନ୍ଧର୍ବ ତେତିଶ କୋଟି ଦେବଗଣ
ସୁଧର୍ମା ସଭାରେ ଥିଲେ ନିକର ଦେବରଣ ।
ଏ ସମୟେ ଅପସରୀ ଆସି ସଜ ହୋଇ
ନୃତ୍ୟ ଗୀତ କଲେ ତହିଁ ଦୁନ୍ଦୁଭି ବଜାଇ ।
ତାହାଙ୍କର ନୃତ୍ୟ ସର୍ବେ ବସି ଦେଖୁଥିନ୍ତି
ଆମ୍ଭେ ମଧ୍ୟ ଦେଖୁଥିଲୁ ଥାଇ ତାଙ୍କ କତି ।
ଏମନ୍ତ କାଳେ କନ୍ଦର୍ପ ଆସିଲେ ସେ ସ୍ଥାନ
ନୃତ୍ୟ ଗୀତରେ ଭୋଳ ଅଛି ସମସ୍ତଙ୍କ ମନ ।
ତେଣୁ କରି ଆସିବାର ନ ଜାଣିଲେ କେହି
ଶତ ପାବକଙ୍କର ତଳେ ଥିଲେ ଉଭା ହୋଇ ।
ମୁହିଁ ମଧ୍ୟ ଦେଖି ନାହିଁ ତାହାଙ୍କୁ ମୋ ନେତ୍ରେ
ସମସ୍ତଙ୍କୁ ଛାଡ଼ି କୋପ କରିଲା ସେ ମୋତେ ।
ଗଉରବ କରି କେହି ନ ଡାକନ୍ତେ ତାକୁ
କୋପ କରି ମାଇଲା ସେ ଆମ୍ଭରେ ବାଣକୁ ।
ମୋହର ହୃଦୟରେ ପଞ୍ଚ ପଡ଼ିଲା ଯେ ବାଣ
ତେଣୁ ବଡ଼ ସଭାରେ ମୁଁ ହେଲା ହତଜ୍ଞାନ ।
ତାହାରି ହେତୁ ଏହାର ହୋଇଛି ଜନମ
ସଙ୍ଗତରେ ଅଛି ଦେଖ ବଶିଷ୍ଠ ଯା ନାମ ।
ସେ ସଭାରେ ମୋତେ ପଞ୍ଚ ପ୍ରାଣମାନ କଲା
ଶାପ ଦେଲା କନ୍ଦର୍ପକୁ ଭସ୍ମ ହୋଇଗଲା ।
କେତେ ଲଜ ଦିଆଇଲା ସଭାରେ ମୋତେ
ସେଥି ପାଇଁ ମୁଖ ପୋତି ଆସୁଅଛି ପଥେ
ମରୁ ଯେ ପ ମରି ତାରି ନ ଚାହିଁବି ମୁଖ
ମୋତେ ଆଜ ଦେଇଅଛି ଯେତେପରି ଦୁଃଖ ।
ଏହା କହୁଁ କହୁଁ କୋପ କଲେ ପ୍ରଜାପତି
ଆଜ କପାଇଁ ରୋଦନ କରୁ ଆଗେ ରତି ।
ଆଜ କି ତୋହର ପତି ବଞ୍ଚିବ ବା ନାହିଁ
ମୁଖ ପୋତିଣ ସାବିତ୍ରୀଙ୍କର ଭୂନ ହୋଇ ।
ମାତା ଦୁହିତାକୁ ଘେନି ବାହାରନ୍ତି ପାଇ
କ୍ରୋଧ ଭାଜନେ କହିବ ଥାଅ ଭୂନ ହୋଇ ।
ମାତା କହନ୍ତେ ସେ ଶୋକ ସମ୍ଭାଳି ରହିଲେ
ସେଦିନ ପିତା ଗୃହରେ କାଳ କଟାଇଲେ ।
ଏକାଦଶୀ ପଡ଼ିଥିଲା ପୁଣି ସେହି ଦିନ
ବିଧବା ବୋଲିଣ ରତି ନ କଲେ ଭୋଜନ ।
ରଜନୀ ପାହିଲା ଉଦୟ କଶ୍ୟପର ଶିଷ୍ୟ
ନିତ୍ୟକର୍ମ ସାରି ବ୍ରହ୍ମା ଗୃହରେ ପ୍ରବେଶ ।
ରତିକି ଘେନି ସାବିତ୍ରୀ ସ୍ୱାମୀ ପାଶେ ଗଲେ
ମାତା ଦୁହିତା ଏକତ୍ରେ ଚରଣେ ପଡ଼ିଲେ ।
ଉଠ ଉଠ ବୋଲି ଡାକ ଦେଲେ ପ୍ରଜାପତି
ଆଜ୍ଞା ମାତ୍ରକେ ଉଠିଲେ ସେ ଦୁହେଁ ତତ୍କ୍ଷଣତି
ବ୍ରହ୍ମା ପଚାରନ୍ତି ଆଜ ବିନୟ କପାଇଁ
ସାବିତ୍ରୀ ବୋଇଲେ ପୁଚ୍ଛ ନ ଜାଣିବା ହୋଇ ।
ଏ ରତି କନ୍ୟା ତୁମ୍ଭର ନୁହେଁ କି ଦୁହିତା
ବିଧବା ହୋଇ ରହିଲେ ହେବ କି ଶୋଭିତା ।
ଦେଖ ରତ୍ନବାନ୍ଧ ଚୂଡ଼ି ଭୂଜରୁ କାଢ଼ିଲା
ଆଜ ଅଳଙ୍କାର ମାନ ଲେଛି ପକାଇଲା ।
ଅଲକ୍ଷଣୀ ଦିଶୁଅଛି ଏହା ପରି ଝିଅ
ଦେଖି କେମନ୍ତେ ସହୁଛି କୁହ ତୁମ୍ଭ ହେଜ ।
କନ୍ଦର୍ପ ଭାରିଯା ଯେହୁ ତୁମ୍ଭର କୁହିତା
ତିନି ଭୁବନେ ଶୁଭିବ ତୁମ୍ଭ ଅପଖ୍ୟାତି ।
ଅଜ୍ଞାନ ପଣେ ଯେ କାମ କଲା ଦ୍ରୋହପଣ
ଯେ ନୋଧକୁ କନ୍ୟାଠାରେ ଧରିଣ ଆପଣ ।
ବ୍ରହ୍ମା ଝିଅ ରାଣ୍ଡୀବୋଲି ସଭାରେ ଶୁଭିବ
କାମ ଜୀବିତ ନ ହେଲେ ପୃଥ୍ୱୀ ନାଶ ଯିବ ।
ପ୍ରାଣୀଙ୍କ ହୃଦୟେ କାମ ଘାରିବ ମଦନ
ସମସ୍ତେ ପୃଥିବୀ ଯାକ ହେବ ଜନଶୂନ୍ୟ ।
କାହୁଁ ପିଲା ପାଇବେ ସମସ୍ତେ ରହିବେ
ତିନିପୁରେ ନାରୀ ମୁଖ କେହି ନ ଚାହିଁବେ ।

ସମସ୍ତଙ୍କ ଅଙ୍ଗେ ଯେଉଁ ଥିଲ ବଳେ କରି
ଖସିଗଲ ସବୁ କଳା ଯାଆନ୍ତେ ସେ ମରି ।
ଏବେ ସ୍ୱାମୀ କନ୍ଦର୍ପଙ୍କୁ ଦିଅ ଜୀବଦାନ
ଦୁହିତା ସୁଖ ସଙ୍ଗରେ ସୁଖ ତ୍ରିଭୁବନ ।
ଏତେ କହିଣ ସାବଣୀ ନେଷ ଠାରଦେଲେ
ଜାଣି ରତିକନ୍ୟା ପିତା ଚରଣେ ପଡ଼ିଲେ ।
ବେନି ପାଦ ଧରି ଦେବୀ କରନ୍ତି ରୋଦନ
ବୋଲନ୍ତି ପିତା ହେ ଆଜ ହାରିବି ଜୀବନ ।
ତୁମ୍ଭେ ଯେବେ ମୋ ସ୍ୱାମୀକି ନଦେବ ଜୀଆଇ
ଏଷଣି ତୁମ୍ଭ ସମ୍ମୁଖରେ ମରିବଇଁ ମୁହିଁ ।
ବିଧବା ଅବସ୍ଥା ମୁହିଁ ସହିବି କେମନ୍ତେ
ଏ ଯୁବା ବୟସେ ଯେବେ ରାଣ୍ଡିକଲ ମୋତେ ।
ସାବଣୀ ବୋଇଲେ ଝିଅ କରୁଛୁ କାରୁଣ୍ୟ
ଦୟା ନାହିଁକି ତୁମ୍ଭର ହୃଦୟ ଦାରୁଣ ।
ବ୍ରହ୍ମା ବୋଇଲେ ଯାହା ସେ କରିଅଛି ମୋତେ
ଜୀଆଇ ତାହାର ମୁଖ ଦେଖିବି କେମନ୍ତେ ।
ଜଗତରେ ଅପଖ୍ୟାତି ରହିଲ ଯାବତୀ
ଯେତେକାଳ ପର୍ଯ୍ୟନ୍ତେ ଥିବ ଏ ଧରଣୀ ।
ମୋହର ମନୁ ନ ଯିବ ଆଉ କଦାଚିତ
ଏତେ ସଭାମଧ୍ୟେ କଲ ମୋତେ କେଉଁ କୃତ୍ୟ ।
ସାବଣୀ ବୋଲେ ତର୍କିର ଶାସ୍ତି ଯେ ପାଇଲ
ତା ନୋହିଲେ ପିତା ତଦା ଭସ୍ମ କମ୍ପା ହେଲ
କେହି ତାହାଙ୍କୁ ଜଗତେ ପାତକୀକ ରଖି
ଦୁହିତା କେବଳ ମାତ୍ର ହୋଇଲ ନିର୍ଲକ୍ଷ୍ମି
ଜଗତେ କଥା ରହିଲା ବୋଇଲେଟି ଯାହା
ଅନ୍ୟଥା କେହୁ ପୁଣି ଯେ କରିବନ୍ତି ତାହା ।
ବଡ଼ଲୋକ ହୋଇ ମଧ୍ୟ ମନ୍ଦକର୍ମ କଲେ
କାଳେଁ କାଳେ କଥା ଥାଏ ଏହି ମହୀତଳେ ।
ସ୍ୱଇଚ୍ଛାରେ ହୋଇନାହିଁ ତୁମ୍ଭେ ବଢ଼ିମନ୍ନ
କନ୍ଦର୍ପ ହୋଇଛି ପିତା ଏହାର କାରଣ ।
ସାନ ଲୋକ କଥା କେହି ପଚାରନ୍ତି ନାହିଁ
ସମସ୍ତଙ୍କୁ ଘୃଣା ପାତ୍ର ସେ ମାତ୍ର ଅଟଇ ।
ତୁମ୍ଭେ ଯେବେ ସ୍ୱାମୀ ଅଟ ଜଗତର ପିତା
ତେଣୁ ମାନ କଲା ପିତା କନ୍ଦର୍ପ ଜାମାତା ।
ତୁମ୍ଭ ତାହାକୁ କପାଇଁ ଗୌରବ ନ କଲ
ଗୁଣବନ୍ତ ଜାମାତାକୁ ପୋଡ଼ି ଭସ୍ମ କଲ ।

ବ୍ରହ୍ମା ବୋଇଲେ କିଏ ବା ବସାଏ କାହାରେ
ସେ ଯେତେବେଳେ ଆସିଲା ବସନ୍ତ ସଙ୍ଗରେ ।
ସାବଣୀ ବୋଇଲେ ସ୍ୱାମୀ ସେ ଦୋଷ ନଧରି
ଏବେ ଜାମାତା ଜୀଆଅ କଥା ଯେନାକରି ।
ଯହୁଁ ସାବଣୀ ବଚନେ କହିଲେ ବହୁତ
ତହୁଁ ବ୍ରହ୍ମା ଶାନ୍ତ ହେଲେ ତେଜ କୋପଚିତ୍ତ ।
ରତି ଭୁଜ ଧରି ତହୁଁ ତୋଳି ପ୍ରଜାପତି
ବୋଇଲେ ଜୀଆଇ ଦେବି ଆସ ଗୋ ଦୁହିତା ।
ଶୁଣି ମାତା ଝିଅ ଦୁହେଁ ହେଲେ ଆନନ୍ଦିତ
ଚଳନ୍ତି ଯେ ରତି ଦେବୀ ପିତାଙ୍କ ସହିତ ।
ଦଣ୍ଡ କମଣ୍ଡଳୁ ଘେନି ଦେବ ପ୍ରଜାପତି
କନ୍ଦର୍ପ ଭସ୍ମ ପାଖକୁ ବେଗେ ଚଳିଯାନ୍ତି ।
କାଳ ମଲା ବୋଲି ହେଲା ସର୍ବତ୍ର ଚହଳ
ଜାଣିଲେ ଯକ୍ଷ ଗନ୍ଧର୍ବ ଦେବତା ସକଳ ।
ହରଷ ହୋଇ ବୋଲନ୍ତି ସର୍ବ ସୁରଗଣ
ବ୍ରହ୍ମା ଯେଉଁ କର୍ମ କଲେ ବଡ଼ଇ ଦାରୁଣ ।
ଆନ ପ୍ରକାରେ କପାଇଁ ଶାପ ନ ବହିଲେ
ଏ ଘୋର କହିଲେ ତାକୁ ଭସ୍ମ କରିଦେଲେ ।
ଆକୁଳ ହୋଇ ଆଶ୍ଚର୍ଯ୍ୟ ଦେଖି ଦେବଗଣ
ଛଳବାତ ନ କରନ୍ତି ବ୍ରହ୍ମାଙ୍କୁ ଡରିଣ ।
ବୋଲନ୍ତି ଶୁଣିଲେ ଶାପ ଆମ୍ଭନ୍ତ ଏ ଦେବ
ଭଲ ପ୍ରବୋଧ କରିବା କହିଣ ଦଇବ ।
ବ୍ରହ୍ମାକୁ ଘେନିଣ ତାଙ୍କୁ ଆସିବା ଜୀଆଇ
ଏତେ ଭଲ ଦେବତା ଏ ଯାଆନ୍ତି ଚଳାଇ ।
ଯାଉଁ ଯାଉଁ ଦେଖାହେଲେ ପଥେ ବେଦବର
ନମସ୍କାର କରି ସର୍ବେ ଶିରେ ଦେଇ କର
ବ୍ରହ୍ମା ପଚାରନ୍ତି ମେତେ ପ୍ରବୋଧିବା ପାଇଁ
ଆସିଅଛନ୍ତି ଏ ଦେବେ କୁହାକୁହି ହୋଇ ।
ଏତେ ଭଲ ପଚାରନ୍ତି କମଳ ଆସନ
କେଣେ ଆଗତ ହୋଇଛ ସର୍ବ ସୁରଗଣ ।
ଦେବତାମାନେ ବୋଇଲେ ତୁମ୍ଭର ସମ୍ମୁଖୁ
ଜନ୍ତୁ ଆସିଅଛୁଁ କାମ ଜୀଆଇଁ ଦେବାକୁ ।
ବ୍ରହ୍ମା ବୋଇଲେ ଯାଉଛୁ ଆମ୍ଭେ ତହିଁ ପାଇଁ
ଆସ ସର୍ବେ କନ୍ଦର୍ପଙ୍କୁ ଆସିବା ଜୀଆଇ ।
ଶୁଣି କରି ଦେବତା ଏ ଆନନ୍ଦ ହୋଇଲେ
ବ୍ରହ୍ମା ସଙ୍ଗତେ କନ୍ଦର୍ପ ଗୃହକୁ ଚଳିଲେ ।

କାମ ଗୃହ ମଧ୍ୟେ ପଶି ଦେଖିଲେ ସେ ଯାଇ
ପଡ଼ିଅଛି ଭସ୍ମରାଶି ପଦା ଗଦା ହୋଇ ।
ଉବୁସ ଉବୁସ ହୋଇ ଦେବତା ଦେଖନ୍ତି
ରତିକି ଗୃହିଣି ବ୍ରହ୍ମା ଏମନ୍ତ ବୋଲନ୍ତି ।
ତୁହି ଏବେ ଅଳଙ୍କାର ତୋ ଦେହରେ ଭର
ଏହିକ୍ଷଣି ଜୀଆଇବି ପତିକି ତୋହର ।
ଆଜ୍ଞାମାତ୍ରେ ରତିଦେବୀ ସକଳ ଭୂଷଣ
ଘେନ ଆପଣା ଅଙ୍ଗରେ କଲେ ଆଭରଣ ।
ଦେବାଙ୍ଗ ବସନ ପିନ୍ଧି ହେଲେ ଦିବ୍ୟବେଶ
ତାହା ଦେଖି ପ୍ରଜାପତି ହୋଇଲେ ସନ୍ତୋଷ ।
କାମର ନିକଟେ ଯାଇ ବସି ପ୍ରଜାପତି
ପ୍ରତିମା ପ୍ରାୟେ କରି ଭସ୍ମକୁ ଗଢ଼ନ୍ତି ।
ଗଢ଼ିଣ ସେ ପ୍ରତିମାକୁ କାମ ପ୍ରାୟ କଲେ
ମୃତ୍ୟୁ ସଞ୍ଜୀବନୀ ମନ୍ତ୍ର କର୍ଣ୍ଣରେ କହିଲେ ।
ପ୍ରାଣ ପାଇଣ କନ୍ଦର୍ପ ଉଠିଲା ତକ୍ଷଣ
ପୂର୍ବୁଁ ଶତଗୁଣ ହୋଇ ନିର୍ମଳ କରଣ ।
ସର୍ବ ଅବୟବ ପୂର୍ବ ପରାୟେ ଶୋଭଇ
କିଛିହିଁ ପ୍ରଭେଦ ନାହିଁ ସମାନ ଦିଶଇ ।
ଯେଉଁ ବେଶରେ ସମସ୍ତଙ୍କୁ ମୋହୁ ଥାଉଥିଲା
ସେହି ପଞ୍ଚଧାନ ପିନ୍ଧି ଉଠିଣ ବସିଲା ।
ତାହା ଦେଖି ଦେବତାଏ ସାଧୁ ସାଧୁ କଲେ
ଅତି ଆନନ୍ଦିତ ହୋଇ କୁସୁମ ବର୍ଷିଲେ ।
ଦୁନ୍ଦୁଭି ବାଦ୍ୟ ବଜାନ୍ତି ଦେବତା ସକଳେ
କନ୍ଦର୍ପ ପ୍ରଣାମ କଲେ ବ୍ରହ୍ମା ପାଦତଳେ ।
ଉଠି ଶିରେ କରଦେଇ ସ୍ତୁତି ଆରମ୍ଭିଲେ
ଜୟ ବ୍ରହ୍ମା ତବାଜ୍ଞାରେ ଉଠିଲି କୁଶଳେ ।
ଜୟ ଜୟ ବେଦବ୍ରହ୍ମା ସଂସାରର ପିତା
ଜୟ ଜୟ ବେଦବ୍ରହ୍ମା ମମ ଇଷ୍ଟଦାତା ।
ଜୟ ଜୟ ବେଦବ୍ରହ୍ମା ଜୀବନ ସଞ୍ଚାରି
ଜୟ ଜୟ ବେଦବ୍ରହ୍ମା ସୃଷ୍ଟି ଅନ୍ତ କରି ।
ଜୟ ଜୟ ବେଦବ୍ରହ୍ମା ସର୍ବ ହୃଦେ ବାସ
ଜୟ ଜୟ ବେଦବ୍ରହ୍ମା ବନ୍ଦନ୍ତି ତ୍ରିଦଶ ।
ଜୟ ଜୟ ବେଦବ୍ରହ୍ମା ତୁମ୍ଭେ ହିଁ ସଂସାର
ଜୟ ଜୟ ବେଦବ୍ରହ୍ମା ତୁମ୍ଭେହିଁ ଈଶ୍ୱର ।
ଅନେକଦ୍ରୋହ ମୁଁ କଲି ନଘେନ ମୋ ଦୋଷ
ମୁହିଁ ତୁମ୍ଭ ପୁତ୍ର ସଦା ତୋ ପାଦର ଦାସ ।
ମନ କଲେ ଆନ ମାର ନ ପାର କି ପରି
ଜଗତ ଈଶ୍ୱର ତୁମ୍ଭ ନାହିଁ କେହି ସରି ।
ଏ ମୋହର ଦୋଷ ସବୁ କରିବାକୁ କ୍ଷମା
କନ୍ଦର୍ପ ସ୍ତୁତିରେ ତୋଷ ହେଲେ ବେଦବ୍ରହ୍ମା ।
କୋଳେ ଧରି କନ୍ଦର୍ପକୁ କନ୍ୟା ସମର୍ପିଲେ
ରତି କାମ ବେନି ନିଜ ପୁରରେ ରହିଲେ ।
ଦେବଗଣଙ୍କୁ ଘେନିଣ ତହୁଁ ପ୍ରଜାପତି
ଆପଣା ଭୁବନେ ଯାଇ ପ୍ରବେଶ ହୁଅନ୍ତି ।
ସାବିତ୍ରୀଙ୍କ ଆଗେ ବ୍ରହ୍ମା ସକଳ କହିଲେ
କନ୍ଦର୍ପକୁ ଜୀଆଇଣ ଅଇଲୁଁ ବୋଇଲେ ।
ଆନନ୍ଦିତା ହେଲେ ଶୁଣି ଦକ୍ଷଙ୍କ ଦୁହିତା
ରତି କାମ କୁହାକୁହି ହେଲେ ସର୍ବ କଥା ।
ରତିଠାରୁ ଶୁଣି କାମ ହୋଇଲେ ମଉନ
ଏଥୁ ଅନନ୍ତରେ ତୁମ୍ଭ ଶୁଣ ହେ ରାଜନ ।
ବଶିଷ୍ଠଙ୍କ ବ୍ରତ କଲେ ଦେବ ପ୍ରଜାପତି
ଗୁରୁଦେବ ପଢ଼ାଇଲେ ହେଲେ ବ୍ରହ୍ମପତି
କଷା କଉପୀନ ଦଣ୍ଡ କମଣ୍ଡଳୁ ଦେଲେ
ଆବର କର୍ଣ୍ଣରେ ବ୍ରହ୍ମଜ୍ଞାନ ଶିଖାଇଲେ
ମନ୍ତ୍ର ତନ୍ତ୍ର ବିଦ୍ୟାଯାକ ଶିଖିଲେ ସମସ୍ତ
ତପ କରିବାକୁ ତାଙ୍କ ବଳିଲାକ ଚିତ୍ତ ।
ବ୍ରହ୍ମାଙ୍କ ଆଜ୍ଞା ମାଗିଣ ତପ କରି ଗଲେ
ତପସିଦ୍ଧି ହେଉଁ ନିଜ ପୁରକୁ ଅଇଲେ ।
ପିତାଙ୍କ ଚରଣେ ଯାଇଁ କଲେ ନମସ୍କାର
ଦେଖି ସନ୍ତୋଷ କଲ୍ୟାଣେ ହେଲେ ବେଦବର ।
ସପ୍ତର୍ଷି ମଣ୍ଡଳକୁ ସେ ଭ୍ରମିବାକୁ ଗଲେ
ତହୁଁ ଧ୍ରୁବ ବଇକୁଣ୍ଠ ପୁରେ ପ୍ରବେଶିଲେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ଯେବେ ଇଚ୍ଛା ଯାନ୍ତି
ନନ୍ଦିକାର୍ତ୍ତି କାମଧେନୁ ସଙ୍ଗରେ ଥାଆନ୍ତି
ଶୁଣିଲ କି ହେ ନୃପତି କାମର ଦହନ
ହୋଇଥିଲା ଯାହା ଯାହା କରିଲି ବର୍ଣ୍ଣନ ।
ବ୍ରହ୍ମା ବିଚାରିଲେ ରୁଦ୍ର ଭିକ୍ଷ ଖେଦ ନେଲା
ଜାଣି ନ ପାରିଲୁ ତାହା କେଉଁ କୃତ୍ୟ କଲା ।
ମୋ ଆଗରେ କଲା ଯିବା ତେମନ୍ତ ପ୍ରକାର
ଅକାରଣେ ତାଙ୍କେ ଯିବା ଦେଉଥିବ ଦର ।
ଏବେ ସ୍ୱର ଯୋଗବଳେ ସବୁ ଦୃଷ୍ଟ୍ୟ କଲେ
ରୁଦ୍ରଙ୍କ କୁଶଳ ଜାଣି ସନ୍ତୋଷ ହୋଇଲେ ।

ରକ୍ଷ ଭକ୍ଷ ଦୁଷ୍ଟଙ୍କର ଲାଗିଅଛି ବନ୍ଦ
ତାହା ଜାଣି ପ୍ରଜାପତି ହୋଇଲେ ବିଷାଦ ।
ଶୁଣ ଆହେ ନରପତି ଶ୍ରୀ ବିଷ୍ଣୁ ପୁରାଣ
ଶ୍ରବଣେ ପଢ଼ିଲେ ପାପ ହୁଏ ବିମୋଚନ ।
ଶୁଣି ସନ୍ତୋଷ ହୋଇଲେ ଉତ୍ତରା କୁମର
ଅପୂର୍ବ ଚରିତ ଏହୁ ଛନ୍ଦ ସୁଧାସାର ।
ଶ୍ରୀବିଷ୍ଣୁ ପୁରାଣ ନାମ ବଚନର କଥା
ପରୀକ୍ଷିତକୁ କହନ୍ତି ଶୁକ ମହାଜ୍ଞାତା ।
ଶ୍ରୀ ବରାହ ନାରାୟଣ ଚରଣ ସରୋଜ
ସଦା ଧ୍ୟାନ କରୁଅଛି କାମପାଳ ଦ୍ୱିଜ ।

—୦—

## ହିରଣ୍ୟ ଓ ହିରଣ୍ୟାକ୍ଷର ଜନ୍ମ

କରଯୋଡ଼ି ପୁଚ୍ଛା କଲା ପରୀକ୍ଷ ନୃବର
ହେ ମୁନି ଦିତି ଦେବୀର ହେଲା କି କୁମର ।
ଏକଥା ସଂକ୍ଷେପି ମୋତେ କୁହ ବ୍ରହ୍ମମୁନି
ସଂଶୟ ହେଉ ମୋ ଦେହ ଏ ପୁରାଣ ଶୁଣି ।
କହନ୍ତି ଶ୍ରୀ ଶୁକ ମୁନି ଶୁଣ ମହାରଥ
କହିବା ଦିତିର ପୁତ୍ର ଜନ୍ମ ହେବା ତଥ୍ୟ ।
କଶ୍ୟପ ବୀର୍ଯ୍ୟେ ଯହୁଁ ଗର୍ଭ ହେଲା ନାରୀ
ଦିନୁ ଦିନୁ ଦିତି ଗର୍ଭ କ୍ରମେ ହେଲା ଭାରି ।
ହେଲେ ମାସ ପୂର୍ଣ୍ଣ ଯାଇ ତିନମାସ ହେଲା
ଗର୍ଭ ହେତୁ ଅନ୍ଧକାରେ ବାହ୍ୟ ପ୍ରକାଶିଲା ।
ଦିଶଇ ରୂପ ତାଙ୍କର ସୁବର୍ଣ୍ଣ କିରଣ
ଚତୁର୍ମାସ ଯାଇ ପାଞ୍ଚ ହୋଇଲା ସମ୍ପୂର୍ଣ୍ଣ ।
ଷଷ୍ଠମାସେ ତନୁ ସୁଦ୍ଧା ନ ଦିଶଇ ଭଙ୍ଗ
ଅଶାକତ ନୁହେଁ ତନୁ ଦିଶଇ ସୁଆଙ୍ଗ ।
ଦେବୀଙ୍କ ଉଦର ମଧ୍ୟ ବଡ଼ ନ ଦିଶଇ
ଅଷ୍ଟମାସରେ କୁମର ଗର୍ଭରେ ବୁଲଇ ।
ନବମ ମାସ ଯାଇଣ ଦଶମାସ ହେଲା
ଦିତି ମହାଦେବୀଙ୍କର ପୁତ୍ର ଜାତ ହେଲା ।
ସଖୀଏ ଆସି ପ୍ରସବ ତାଙ୍କୁ କରାଇଲେ
ପୁତ୍ରକୁ ଦେଖିଣ ସର୍ବେ ଚକିତ ହୋଇଲେ
ଜନ୍ମିଲା ମାତ୍ରେ ସତେଜ ଦେଖି ସେ କୁମର
କି ଅବା କାଳ ଦେବତା ହେଲା ଅବତାର ।
କାଞ୍ଚନ ପ୍ରାୟେ କୁମର ଶରୀର ଦିଶଇ
ବଜ୍ରସମ ଅଙ୍ଗ ତାର ବପୁ ବିରାଜଇ ।
ବିକଟ ବଦନ ତାର ଅତି ଭୟଙ୍କର
ନଖମାନ ଦୀର୍ଘ ଦୀର୍ଘ କେଶ ତା ଖାଙ୍କର ।
ପଢ଼ିଣ କୁମରମଣି କରଇ ରୋଦନ
ମାତାଏ ଦେଖନ୍ତି ହେଲି ଆନନ୍ଦିତ ମନ ।
କାଶ୍ୟପଙ୍କୁ ବନିତା ଯେ କହିଲେକ ଯାଇ
ଦିତି ଏକ ପୁତ୍ର ଜାତ କଲା ଗୋସାଇଁ ।
ଶୁଣିକରି ମହାମୁନି ସନ୍ତୋଷ ହୋଇଲେ
ପୁତ୍ରକୁ ଦେଖିବା ପାଇଁ ବେଗେ ଚଳିଗଲେ ।
ପ୍ରବେଶ ହୋଇଲେ ମୁନି ଜନ୍ମ ସ୍ଥାନେ ଯାଇ
ଦେଖି ଯୁବତୀଏ ଗଲେ ଆଡ଼ ଆଡ଼ ହୋଇ ।
ପୁତ୍ରକୁ ଦେଖିଣ ମୁନି ବିଚାର କରନ୍ତି
ଏ କୁମରଟା ଅଟଇ ଅସୁର ପ୍ରକୃତି ।
ଅସୁର ବନିତା ଗର୍ଭ ଜାତ ନୁହେ ଆନ
ଏତେ ଭାଳି ଯୁବତୀର ଚୁମ୍ବିଲେ ବଦନ ।
ବୋଇଲେ ପୁତ୍ରକୁ ପାଳ ଅତି ଯତ୍ନକରି
ଏତେ ବୋଲି ଚଳିଗଲେ ତହୁଁ ଅପସରି ।
ମୁନି ଚାଲିଗଲେ ଯହୁଁ ଅଇଲେ ସୁନ୍ଦରୀ
ନାଭି ଛେଦି କୁମରକୁ କରି ଧରାଧରି ।
ଗଙ୍ଗାଜଳ ଘେନି ସ୍ନାନ କରାଇଣ ଦେଲେ
ସୁବର୍ଣ୍ଣଗୃହକୁ ନେଇ ଅଣ୍ଡୁଡ଼ି ସ୍ଥାପିଲେ ।
ଅଗୁରୁଚନ୍ଦନ ଘେନି ଲଗାଇଲେ ଭରି
ଦେବାଙ୍ଗ ବସନେ ଶେଯ ଦେଲେ ସେ ସଜାଇ
ତହିଁ ଉପରେ ବାଳକ ନେଇ ଶୁଆଇଲେ
ଦିତିଙ୍କି ସ୍ନାନ କରାଇ ତା ପାଶେ ରଖିଲେ ।
ସୁରଭି କ୍ଷୀର ଘେନିଣ ଭୁଞ୍ଜାନ୍ତି କୁମର
ଧାଈ ମୁଦୁମୁଲ୍ଲି ଯତ୍ନ କରଲେ ଅପାର ।
କୁଙ୍କୁମ ଲେପନ୍ତି ନେଇ ବାଳକ ଶରୀରେ
ସେ ତନୁଜ ଦେହ ଦିଶେ କାଞ୍ଚନ ପ୍ରକାରେ ।
ଏହିରୂପେ ଏକାଦଶ ଦିନ ବିତିଗଲେ
ଦିତି ମହାଦେବୀ ଶୁଦ୍ଧ ସ୍ନାହାନ କଲେ ।
ନାମ ଦେବାକୁ ଅଇଲେ କାଶ୍ୟପ ପ୍ରବର
କୋଳରେ ଘେନି ବସିଲେ ହୋଇ ସ୍ନେହଭର ।

ବସନ ଭୂଷଣେ ଦିତି ହୋଇଲେ ଭୂଷିତା
ସ୍ୱାମୀ ନିକଟେ ବସିଲେ ହୋଇ ଉପଗତା ।
ମାତା ସମସ୍ତେ ଏକାଠ ସେ ସ୍ଥାନେ ଅଛନ୍ତି
କିସ ନାମ ଦେବ ବୋଲି ମୁନି ପଚାରନ୍ତି
ମୁନି ପଚାରିବା ଶୁଣି ହସି ଭାର୍ଯ୍ୟାଗଣ
ବୋଇଲେ କି ନାମ ଦେବୁଁ ଦିଅନ୍ତୁ ଆପଣ ।
ଭାର୍ଯ୍ୟାଙ୍କ ବଚନେ ମୁନି ହୋଇଲେ ସନ୍ତୋଷ
ଦେଖିଲେ ବାଳକ ଦେହ ବଜ୍ରରୁ କର୍କଶ ।
ତେଣୁ ହିରଣ୍ୟ ବୋଲିଣ ତାର ନାମ ଦେଲେ
ମାତା କୋଳେ ଦେଇ ମୁନି ସେଠାରୁ ଚଳିଲେ
ଦିତି ବୋଇଲେ ମୁନିକୁ ନ କର କଲ୍ୟାଣ
ଧଡ଼ପଡ଼ ହୋଇ କେଣେ ପଳାଅ ଆପଣ ।
କାଶ୍ୟପ କର୍ଣ୍ଣେ ପ୍ରବେଶ ହୁଅନ୍ତେ ସେ ବାଣୀ
ବାହୁଡ଼ି ଆସି ବୋଇଲେ ଶୁଣରେ ତରୁଣୀ ।
ଯେଉଁ କାଳେ ପୁତ୍ର ପାଇଁ ଝୁରି ହେଉଥିଲୁ
ଆମ୍ଭେ ତୋତେ ତେତେବେଳେ କି କଥା କହିଲୁ
କହିଥିଲୁ ପୁତ୍ର ତୋର ହେବ ମହାବଳ
ଜିଣି ନ ପାରିବେ ତାକୁ ଦଶଦିଗପାଳ ।
ଆମ୍ଭର ସେ ବରେ ପୁତ୍ର ହେଲ ଦନ୍ତାକାର
ଜନ୍ମଦିନ ଦେଖିଲୁ ତ କମ୍ପେ ବସୁନ୍ଧରା ।
ବଜ୍ରରୁ ଆଣ୍ଟ ଅଟଇ ଏହାର ତ ଅଙ୍ଗ
ନାନା ଅସ୍ତ୍ର ପଡ଼ିଲେହେଁ ହୋଇଯିବ ଭଙ୍ଗ ।
ବିଷ୍ଣୁଙ୍କର ସୁଦର୍ଶନ କାଳଚକ୍ର ଆଦି
ବ୍ରହ୍ମଶିର ବ୍ରହ୍ମଶର ନ ପାରିବେ ଭେଦି ।
ରୁଦ୍ରଅସ୍ତ୍ର ପବନାସ୍ତ୍ର ଅଗ୍ନି ମୁଦ୍ଗର
ଲୌହଗଦା କାଳଗଦା ନାଗପାଶ ଶର ।
ଇନ୍ଦ୍ରର ବଜ୍ରରେ ଏହୁ ନୋହିବ ନିଧନ
ଏ ତିନିପୁରରେ ରହିଛନ୍ତି ଯେତେ ଅସ୍ତ୍ରମାନ ।
ଜଳେ ନ ବୁଡ଼ିବ ଛେଦ ନୋହିବ ଖଡ଼୍ଗରେ
ଅଗ୍ନିରେ ନ ପୋଡ଼ିବ ନ ଉଡ଼ିବ ବାୟୁରେ ।
ଦିତିଙ୍କର ଅନୁରୋଧେ ଅଙ୍ଗକୁ ଛୁଇଁଲେ
ବଜ୍ରସମ ଦେହ ବନ୍ଧ ବୋଲିଣ କହିଲେ ।
ବର ଦେଇଣ ଚାହାଁନ୍ତି ଦିତିଙ୍କ ବଦନ
ଏବେ ସଖି ସନ୍ତୋଷ କି ହେଲା ତୋର ମନ ।
ତୁ ଯେ ବୋଲୁ ଜାତ କରେ ମୁହିଁ ଯେତେ ସୁତ
ତାଙ୍କଠାରେ ନିର୍ମଳତା ନାହିଁ କିମ୍ପା ତଉ ।

ଏମନ୍ତ ବୋଲି ଦୁଃଖ ତୁ କରୁଥାଉ ମୋତେ
ଏବେ ପ୍ରତ୍ୟକ୍ଷ ଫଳୁକି କିମ୍ପା ତୋର ଚିତ୍ତେ ।
ଏ ତୋର ପୁତ୍ରକୁ ଦେବ ଆଜ୍ଞା ଏକ ବର
କଥା ଏ କହିବ ତୋତେ ତାହା ଦୃଢ଼କର ।
ବିଷ୍ଣୁ ଭକତିର ଜ୍ଞାନ କହିବୁ ପୁତ୍ରକୁ
ବଇରି ନ କରେ ଯେହ୍ନେ ଶ୍ରୀନାରାୟଣଙ୍କୁ ।
ଦୁଷ୍ଟ ନ ହୋଇ ସଂସାର ଯଦ ନ ନାଶିବେ
ତେବେ ତୋର ପୁତ୍ର ଜାଣ ଚିରଜୀବ ହେବେ
ଶୁଣି ଦିତି ଦେବୀ ତାଙ୍କୁ ବୋଇଲେ ବଚନ
ତୁମ୍ଭେ ପିତା ଶିଖାଇବ ତାଙ୍କୁ ବ୍ରହ୍ମଜ୍ଞାନ ।
ଏହା କହି ଦିତିଦେବୀ ପ୍ରବୋଧ ହୋଇଲେ
ସେଠାରୁ କାଶ୍ୟପ ଋଷି ବାହୁଡ଼ିଣ ଗଲେ ।
କହନ୍ତି ଶ୍ରୀ ଶୁକମୁନି ଶୁଣ ନୃପରାଣ
ଦିତି ଅତି ଯତ୍ନେ ପୁତ୍ର କରନ୍ତି ପାଳନ ।
ବଢ଼ଇ କୁମର ଯେସି ଚନ୍ଦ୍ରକଳା ପ୍ରାୟ
ତୋଳି ନ ପାରନ୍ତି ପୁତ୍ର ଗୁରୁ ଅତିଶୟ ।
ନିର୍ଧୂମ ଅଗ୍ନି ପରାଏ ମୁନିଙ୍କର ସୁତ
ଦେଖି ସନ୍ତୋଷ ହୁଅଇ ମାତାଙ୍କର ଚିତ୍ତ ।
ଏହି ରୂପେ କୁମରକୁ ବରଷେ ହୋଇଲା
କୋଟିଶଶୀ ତେଜ ପରାଏ ଚଳବୁଲ କଲା ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ନରପତି
ଦିତି ଦେବୀ ପୁନର୍ବାର ହେଲେ ଗର୍ଭବତୀ ।
ଦଶମାସ ସମ୍ପୂର୍ଣ୍ଣରେ ହେଲା ପୁତ୍ର ଜାତ
କାଳ ଦେବତା ପରାଏ ଦିଶେ ତାର ଗାତ୍ର ।
ପଡ଼ିବା ମାତ୍ରେ ଉଡ଼ି ଏ ଗୃହେ ସେ କୁମର
ମହାବଳୀ ନିଶାଚର ଦେହ ଘୃଷୁବାର ।
ପରିବାରଠାରୁ ଶୁଣି ମୁନି ଦେଖିଗଲେ
ଅଲୌକିକ ରୂପ ଦେଖି ଚକିତ ହୋଇଲେ ।
ତାର ଜନ୍ମ ହେବା କାଳେ ପୃଥିବୀ କମ୍ପିଲା
ନକ୍ଷତ୍ରମାନଙ୍କଠାରୁ ଧୂମ୍ର ଜାତ ହେଲା ।
ଦିବସରେ ତାରାଗଣ ଦିଶିଲେ ଗଗନେ
ଅରିଷ୍ଟ ଜାତ ହୋଇଲା ଇନ୍ଦ୍ରର ଭୁବନେ ।
ଇନ୍ଦ୍ରଧନୁ ଉଦେ ହେଲା ରଜନୀ କାଳରେ
ନିର୍ଘାତ ପଡ଼େ ପାତାଳେ ସେ ମଧ୍ୟ ସ୍ୱର୍ଗରେ
ଅପୂର୍ବ ସୁନ୍ଦର ଯେହୁ ଅଟେ ମହାମଲ୍ଲ
ଦେଖ ଜନ ଜନ୍ତୁଙ୍କର ଅଟଇ ସେ ଶଲ୍ୟ ।

ବିକଟାଳ ମୁଖ ତାର କୃଷ୍ଣବର୍ଣ୍ଣ କାୟ
ତେଜ ପ୍ରକାଶଇ ଯେସନ୍ତେ କୋଟି ସୂର୍ଯ୍ୟପ୍ରାୟ ।
ନଖ ଦନ୍ତ ତୀକ୍ଷ୍ଣ ତୀକ୍ଷ୍ଣ ଦିଶେ ମହାଘୋର
ଖଙ୍କର କେଶ ବିସ୍ତାର ନାସାପୁଡ଼ା ତାର ।
ନାଭି କାଟିଣ ସ୍ନାହାନ ତାକୁ କରାଇଲେ
କଷ୍ଟରେ ସୂତିକାଗଣ ତୋଳି ଘେନିଗଲେ ।
ଅଳତ୍ତ ଲଗାଇ ପୁଣି ଶେଯ ପାରି ଦେଇ
ତହିଁରେ କୁମରକୁ ସେ ଦେଲେକ ଶୁଆଇ ।
ହିରଣ୍ୟକୁ ପାଳିବାର ସବିସ୍ତେ ପାଳନ୍ତି
ନାମ ଦେବାକୁ କାଶ୍ୟପ ସେ ସ୍ଥାନେ ଆସନ୍ତି ।
ଦେଖିଲେ କୁମର ମଣି ତହିଁ ଅଛି ଶୋଇ
ହିରଣ୍ୟଠାରୁ ଅଧିକ ବଳରେ ଦିଶଇ ।
ଦିତି ଆଣି କୁମରକୁ ଋଷିକୋଳେ ଦେଲେ
ପୁତ୍ରକୁ ଧରି କଶ୍ୟପ ସନ୍ତୋଷ ହୋଇଲେ ।
ପ୍ରିୟାର ମୁଖକୁ ଚାହିଁ ବୋଲନ୍ତି ବଚନ
ହିରଣ୍ୟାକ୍ଷ ବୋଲି ହେଉ ଏ ପୁତ୍ରର ନାମ ।
ମାତା ବୋଇଲେ କଲ୍ୟାଣ ଏ ପୁତ୍ରକୁ କର
ଆଶିଷ ବୋଇଲେ ବଜ୍ର ହେଉ ତା ଶରୀର ।
ବଜ୍ର ସୁଦର୍ଶନ ଚକ୍ର କାଳ ଚକ୍ର ଆଦି
ବ୍ରହ୍ମବାଣ ରୁଦ୍ରବାଣ ନ ପାରନ୍ତୁ ଭେଦି ।
ହିରଣ୍ୟକୁ ଯେଉଁ ବର ଆମ୍ଭେ ଅଛୁଁ ଦେଇ
ସେହିବରେ ବଳବାନ ହୁଅ ପୁତ୍ର ତୁହି ।
ପୁତ୍ରକୁ ଚାହିଁ କଶ୍ୟପ ବିଚାରନ୍ତି ମନ
ନିଶ୍ଚୟ ଏ ପୁତ୍ରମାନେ ନାଶିବେ ଭୁବନ ।
ବିସ୍ମୟ ଚିତ୍ତେ କାହାକୁ ତହିଁ ନ କହିଲେ
ଦିତି କୋଳେ ସେ ପୁତ୍ରକୁ ପୁଣି ତୋଳି ଦେଲେ
ପୁତ୍ରକୁ ଧଇଲେ ଦିତି କୋଳାଗତ କରି
ତାହାଙ୍କୁ ଚାହିଁ ବୋଲନ୍ତି ପୁଣି ତପୋଋଷି ।
ଏ ପୁତ୍ରକୁ ସଦାକାଳେ ଦେବୁ ସ୍ତନ୍ୟପାନ
କେବେ କଦାପି ନୋହିବ ଏହାର ନିଧନ ।
ତୋହର ସ୍ତନରୁ କ୍ଷୀର ସଦା ଖାଉଥିଲେ
ବ୍ରହ୍ମା ବିଷ୍ଣୁ ରୁଦ୍ର ଜିଣି ନ ପାରିବେ ଭଲେ ।
ତାହା ଶୁଣି ଦିତି ଦେବୀ ହୋଇ ଆନନ୍ଦିତ
ବୋଇଲେ ହେ ସ୍ୱାମୀ ଆଜ୍ଞା ପାଳିବି ନିରତ ।
କେଉଁ ରୂପେ ଦେବ ମୋତେ ଆଜ୍ଞା କରିଥାଅ
ଏ କଥା ଶୁଣି କହନ୍ତି କାଶ୍ୟପ ପୁଅ ।
ଶିଶୁରୂପ ଧରି ତୋର ସ୍ତନ ଖାଉଥିବ
ନ ଖାଇଲେ ଦିନେ ନିଶ୍ଚେ ମରଣ ଲଭିବ ।
କାମରୂପୀ ଶରୀର ଯେ ହୋଇବ ଏହାର
ଏ ବଚନେ ପଶ୍ଚିରନ୍ତି ପଶ୍ଚଷ ନ ପବର ।
ଆପଣ ପୁତ୍ରକୁ କମ୍ପା ଏ ଶାପ ଦିହିଲେ
ସ୍ତନ୍ୟପାନ ବିନା ପ୍ରାଣ ବିସର୍ଜିବ ଭଲେ ।
ସେଥିପାଇଁ ଦିତି କସ ବିଗ୍ରହିଲେ ଚିତ୍ତ
କାଶ୍ୟପ କହିଲେ ଯାହା କେବଣ ଚରିତ ।
ଏମନ୍ତ ଶୁଣି ବୋଲନ୍ତି ଚହୁଁ ତପୋଋଷି
କାଶ୍ୟପ ଅଟନ୍ତି ସଦା ପୃଥ୍ୱୀ ହିତକାଶୀ ।
ଜଗତର କଷ୍ଟକୁ ସେ ସହି ନ ପାରନ୍ତି
ନିଜ ବଂଶ ହେଲେ ମଧ୍ୟ ନିପାତ ଗୃହନ୍ତି ।
ତାର ଜନ୍ମକାଳେ ହେଲା ଯେତେ ଉତପାତ
ଦେଖିଣ ଡରିଲେ ମୁନି ଦେବତା ସମସ୍ତ ।
ଯୋଗବଳରେ ଜାଣିଲେ ଦେବତା ସକଳ
କାଶ୍ୟପ ପୁତ୍ର ଜନ୍ମିଛି ଏ ଉତ୍ପାତ ମୂଳ ।
ଯେ ବାର୍ତ୍ତା ଗୋଟି କାଶ୍ୟପ ଅବଗତ ଥିଲେ
ତାହା ଜାଣି ଦେବତାଏ ସୁସ୍ଥ ହୋଇଲେ
ତେଣୁକରି ଚିତ୍ତେ ଭୟ ହୋଇଲା ତାଙ୍କର
ସ୍ୱଭାବେ ଜାଣନ୍ତି ଏ ତ ଅଟନ୍ତି ଅସୁର ।
ପ୍ରିୟା ଅନୁରୋଧେ ସିନା ବର ଦେଇଥିଲେ
ଅଥଚ ତାଙ୍କର ମୃତ୍ୟୁପଥ ରଖିଦେଲେ ।
ମାତା ଏ ବୋଇଲେ ପ୍ରଭୁ ଏତେ ବର ଦେଇ
ମୃତ୍ୟୁହେବ ବୋଲି ପୁଣି କହିଲ କିପାଇଁ ।
କାଶ୍ୟପ ବୋଇଲେ ସ୍ତନ୍ୟପାନ ଦେଉଥିଲେ
ତୋର ପୁତ୍ର ଗୋଟି ଆଉ ନ ମରିବ ଭଲେ ।
ଦିତି ବୋଇଲେ ନ ଦେଲେ ନିଜେ କ୍ଷୀରପାନ
ତେବେ ନିଶ୍ଚୟ ମରିବ ମୋହର ନନ୍ଦନ ।
ମୋର ପୁତ୍ରକୁ ତୁମର ଟିକେ ଶ୍ରଦ୍ଧା ନାହିଁ
ଏତେ ବୋଲିଣ ବସିଲେ ଶିରେ କର ଦେଇ
କାଶ୍ୟପ ବୋଇଲେ ଦୁଃଖ ନ କରଗୋ ଦିତି
ତୋର ଗର୍ଭରୁ ସମ୍ଭୂତ ହୋଇଛନ୍ତି ଖଣ୍ଡୀ ।
ଧର୍ମରେ ଥିଲେ କିପାଇଁ ଯିବ ମୃତ୍ୟୁପଥ
ଉତ୍ପାତ କଲେ ରଖି ବା କେହୁ ସାମରଥ ।
ତୁ ଯାହା ବୋଇଲୁ ପୁତ୍ର ହୋଇବ ନିଧନ
କେବେ ଦିନେ ନ କଲେ ତୋର ସ୍ତନ୍ୟପାନ

ଯେବେ ପାନ କରଣ ସେ ମନରେ ପଶିବ
ତେବେ ଆମ୍ଭେ ବୋଲୁ ଅସ୍ତ୍ରେ ବିନାଶ ନୋହିବ
ଶିବ ବିଷ୍ଣୁ ସହିତରେ ସବେ ମିଳିବ ହାର
ଅସ୍ତ୍ରବଳେ କେହି ତାକୁ ନ ପାରିବେ ମାର ।
ଦେବଙ୍କର ଅଛି ଯେତେ ଯେତେ କୂଟ ଛନ୍ଦ
ସ୍ତନ୍ୟ ଦେଉଥିଲେ ସବୁ ହୋଇଯିବ ବନ୍ଦ ।
ଯାହା ମୁଁ ବୋଇଲି ତାହା ନ ହୋଇବ ଆନ
ଅବନିତ୍ରେ ପୁତ୍ର ତୋର ନୋହିବ ନିଧନ ।
କାଶ୍ୟପ ବଚନେ ତୋଷ ଅସୁର ଜନନୀ
ସେଠାବରୁ ଚଳିଗଲେ ଅନ୍ୟ କର୍ମେ ମୁନି ।
ଜୟ ଜୟ ଜଗନ୍ନାଥ ନୀଳାଚଳ ନାଥ
ଚଉଦ ବ୍ରହ୍ମାଣ୍ଡେ ତୋର ନାମଟି ଯଥାର୍ଥ ।
ସମ୍ପଦରେ ଥାଇ ଯେହୁ ସର୍ବଦା ଡାକଇ
ବିପଦେ ଡାକିଲେ ବେଗେ ତାକୁ ରଖ ଯାଇ ।
ଅପାର ମହିମା ପ୍ରଭୁ ନାହିଁ ତାର ଅନ୍ତ
ଭକତ ଜାଣଇ ଯିନା ଭକ୍ତିର ତଦନ୍ତ ।
ତୁମ୍ଭ ସକଳ ଜୀବଙ୍କ ଅଟୁ ହୃଷୀକେଶ
ପାପ ତାପ କ୍ଷମାକରି ରଖ କୋଡ଼େ ଧରି
ଦ୍ୱିଜ କାମପାଳ ସଦା ତୋ ପାଦେ ଶରଣ
ଅନ୍ତମେ ରଖିବୁ ନାଥ କହେ ନାରାୟଣ ।

—*—

## ହିରଣ୍ୟ ଓ ହିରଣ୍ୟାକ୍ଷର ପୂର୍ବଜନ୍ମ ବିବରଣୀ

ଶୁକମୁନିଙ୍କୁ ପୁଛିଲେ ପୁଣି ନୃପରାଜ
ପୂର୍ବଜନ୍ମେ କିଏ ଥିଲେ ସେ ବେନି ତନୁଜ ।
ଶାପଗ୍ରସ୍ତ ହୋଇ କିବା ନିଜ କର୍ମକରି
ଜନମ ହୋଇଲେ ଆସି ଏହି ବସୁନ୍ଧରା ।
ସେହିକଥା କୁହ ମୋତେ ଆହେ ତପୋଧନ
ଶୁଣିବାକୁ ହେଉଅଛି ମୋର ବଡ଼ ମନ ।
ରାଜାଙ୍କ ବଚନ ଶୁଣି ତହୁଁ ମୁନିବର
ବୋଇଲେ ଶ୍ରବଣ କର ପାଣ୍ଡୁ ବଂଶଧର ।
ଯାହା ପଚାରିଲ ତାହା କହିବା ନିଶ୍ଚିତ
ଆଦ୍ୟ ସତ୍ୟ ଯୁଗର ଏ ଅଟଇ ଚରିତ ।

ଦିନବାରେ ସନକାଦି ମୁନିମାନେ ଯବେ
ବୈକୁଣ୍ଠେ ଗମନ କଲେ ପ୍ରଭୁ ଦରଶନେ ।
ବୈକୁଣ୍ଠ ଦ୍ୱାରରେ ମିଳିଲେ ଯାଇ ସର୍ବ ମୁନି
ଦେଖିଲେ ଜୟ ବିଜୟ ନନ୍ତି ଦ୍ୱାସ୍ଥ ବେନି ।
ତାହାଙ୍କୁ ଗୁହାରି ବୋଲନ୍ତି ସର୍ବ ମୁନିବର
ଦ୍ୱାର ଛାଡ଼ ଦରଶନେ ଯିବୁ ଚକ୍ରଧର ।
ଜୟ ବିଜୟ ବୋଇଲେ ନାହିଁ ଅବକାଶ
ଲକ୍ଷ୍ମୀ ସହିତ ଅଛନ୍ତି ପ୍ରଭୁ ପୀତବାସ ।
ମୁନିଏ ବୋଇଲେ ତେବେ ହୋଇଲା ଉତ୍ତମ
ଲକ୍ଷ୍ମୀ ନାରାୟଣ ଦେଖି ପୂର୍ଣ୍ଣ ହେବ କାମ
ବହୁତ ଧର୍ମ ପାଇବ ବାଟ ଛାଡ଼ିଦେଲେ
କୋଟି ଜନ୍ମ ପାପ ଆଜ ଯିବ ଭଲେ ଭଲେ
କଥା ନ ଶୁଣନ୍ତି ନାସ୍ତି କଲେ ବେନିଭାଇ
ଆର୍ତ୍ତ ହୋଇ ମୁନିମାନେ ପଶନ୍ତି ବଳାଇ ।
ଗଦା ଯେନ ପେଲିଦେଲେ ତାଙ୍କୁ ବେନି ବୀର
ଭୟକରି ଉଭାହେଲେ ସର୍ବ ମୁନିବର ।
ବୋଇଲେ ଆରେ ପାମରେ ଏ ଦ୍ୱାରେ ନଥାଅ
ତିନି ଜନ୍ମପାଏ ଦୈତ୍ୟ କୁଳେ ଜନ୍ମ ପାଅ ।
ଏତେବୋଲି ମୁନିମାନେ ଯେଝା ଶ୍ରମେ ଗଲେ
ଋଷିଶାପ ଶୁଣି ବେନି ଭୟଗ୍ରସ୍ତ ହେଲେ ।
ଏହିରୂପେ କେତେଦିନ ତହୁଁ ବିତିଗଲା
ପୁଣି ଏକ ଅଭିଶାପ ତାହାଙ୍କୁ ପଡ଼ିଲା ।
ଅଙ୍ଗିରସ ସମ୍ମୁଖରେ ମହାଲକ୍ଷ୍ମୀ ଯବେ
ଆକାଶ ଗଙ୍ଗାକୁ ଗଲେ ମକର ସ୍ନାହାନେ
ତହୁଁ ବସନ ଭୂଷଣେ ହୋଇଲେ ଭୂଷିତ
ପଦ୍ମପୁଷ୍ପ ଏକଗୋଟି ଧରିଛନ୍ତି ହସ୍ତ ।
ଶ୍ରୀଅଙ୍ଗର ତେଜ ପୁଞ୍ଜି ବିଜୁଳିକି ଜିଣି
ନାରାୟଣ ଦରଶନେ ଯାନ୍ତେ ଯୋଷାମଣି ।
ଗୃହର ଅଲଗା ସ୍ଥାନେ ରହି ବେହରଣ
ତହିଁ ବିଜେ କରିଛନ୍ତି ପ୍ରଭୁ ନାରାୟଣ ।
ସମସ୍ତ ଦେବତା ତହିଁ ଦରଶନ ଅର୍ଥେ
ବେଢ଼ି ରହିଛନ୍ତି ଯାଇ ପ୍ରଭୁଙ୍କ ଅଗ୍ରତେ ।
ବ୍ରହ୍ମା ରୁଦ୍ର ପୁରନ୍ଦର ଆବର କୁବେର
ସନକ ସନାତନ ଯେ ଶଶୀ ଦିବାକର
ସ୍ୱାତ୍ମେଚ ମରୀଚୀ ପୁଣି ଦକ୍ଷ ପ୍ରଜାପତି
ବରୁଣ ନୈର୍ଋତ ଅଗ୍ନି କଶ୍ୟପ ଅଛନ୍ତି ।

ଗୌତମ ଅଙ୍ଗିରା ଭୃଗୁ ଋଷି ମହାକାଳ
ବିଦଗ୍ଧ ଦେବତା ଆସି ହୋଇଛନ୍ତି ମେଳ ।
ଏମନ୍ତ କାଳେ ବିଜୟ ଶ୍ରୀହରି ପ୍ରେୟସୀ
ସିଂହଦ୍ୱାରେ ଯେ ପ୍ରବେଶ ହୋଇଲେ ସେ ଆସି
ଜୟ ବିଜୟ ଦୁଆରୀ ରହି ଜଗିଥାନ୍ତି
ସ୍ୱାମୀଙ୍କ ଆଜ୍ଞା ହୋଇଲେ ଗୃହ ନ ଦିଅନ୍ତି ।
ନାରାୟଣ ନିଜ ଭୃତ୍ୟ ତାଙ୍କୁ ଜାତ କରି
ରଖିଲେ ତାହାଙ୍କୁ ନେଇ ଦ୍ୱାରେ କରି ଦ୍ୱାରୀ ।
ଶ୍ରୀହରିଙ୍କ ଆଜ୍ଞାରେ ସେ ଦ୍ୱାରେ ଜଗିଥାନ୍ତି
ଦେବାସୁର ନରଙ୍କୁ ସେ ଯିତ ନ କରନ୍ତି ।
ବଳେ ପଶିବାକୁ କେହ୍ନ ତିନପୁରେ ନାହିଁ
ଆଜ୍ଞା ହୋଇଲେ ଭିତରପୁରେ ଯିବେ କାହିଁ ।
ବେନି ଗଦା ବେନି ହସ୍ତେ ଧରିଛନ୍ତି ସାରେ
ରତ୍ନାଳଙ୍କାରେ ଭୂଷିତ ମୁକୁଟ ଶିରରେ ।
କୁଣ୍ଡଳ ପୀତବସନ ପରିଧାନ କରି
ବେନିଭାଇ ବସିଛନ୍ତି ଦ୍ୱାରକୁ ଆଗୋରି ।
ଲକ୍ଷ୍ମୀଙ୍କୁ ଦେଖିବାମାତ୍ରେ ଉଠି ଧାଇଁକାରେ
ଦଣ୍ଡ ପ୍ରଣାମ କରିଲେ ଲୋଟିଣ ଭୂମିରେ ।
ପଚାରନ୍ତି କେଣେ ବିଜେ କଲ ଠାକୁରାଣୀ
ପ୍ରତିଉତ୍ତର ଦିଅନ୍ତି ତାଙ୍କୁ ଯୋଷାମଣି ।
ଆଜରେ କୁମର ଅଷ୍ଟ ମାଘ ଗୁରୁବାର
ସ୍ୱାମୀ ଚରଣେ କରିବି ଯାଇ ନମସ୍କାର ।
ଦରଶନ କରି ବେଗେ ବାହୁଡ଼ି ଆସିବି
ଛପନ କୋଟି ଜୀବଙ୍କୁ ପଡ଼ି ଚରଚିବି ।
ଆଜ ପଡ଼ିଅଛି ଜାଣ ଆଦ୍ୟ ଗୁରୁବାର
ଦ୍ୱାର ଛାଡ଼ିଦିଅ ଯିବି ଦର୍ଶନେ ତାଙ୍କର ।
ଏହି ଗୁରୁବାର ମୋର ଜନମ ଦିବସ
ସମସ୍ତେ ଜାଣନ୍ତି ତୁମ୍ଭେ ଜାଣିଛ ଅବଶ୍ୟ ।
ଆଠଦିନେ ପଡ଼େ ଜନ୍ମ ଦିବସ ମୋହର
ଆଜ ମକର ପ୍ରଥମ ଦିନ ଗୁରୁବାର ।
ଗଙ୍ଗାରେ ସ୍ନାହାନ କରି ହୋଇଛି ଭୂଷଣ
କରିବି ଦର୍ଶନ ଆଜ ସ୍ୱାମୀଙ୍କ ଚରଣ ।
ଠାକୁରାଣୀଙ୍କ ବଚନେ ଜୟ ତୁନ୍ନ ହେଲା
ଦେବୀଙ୍କ ମୁଖକୁ ଚାହିଁ ବିଜୟ କହିଲା ।
ସ୍ୱ ଦିନର ଦେବଛନ୍ତି ପ୍ରଭୁଙ୍କ ସଙ୍ଗତେ
ପ୍ରଭୁଙ୍କ ଘରଣୀ ଯିବ ସେଠାକୁ କେମନ୍ତେ ।
ବ୍ରହ୍ମା ପୁରନ୍ଦର ବେଢ଼ି ରହିଛନ୍ତି ତାଙ୍କୁ
ଗନ୍ଧ ଗାନ ମୁଖରାବ ନ ଶୁଭେ ତୁମ୍ଭଙ୍କୁ ।
ଅପସରୀ କରୁଛନ୍ତି ନୃତ୍ୟ ଗୀତ ରସ
ଗନ୍ଧର୍ବେ ବଜାନ୍ତି ବାଦ୍ୟ ଅଶେଷ ନିର୍ଘୋଷ ।
କେତେବେଳେ ଗହଳକୁ କୁହ ଯିବ ମା କେମନ୍ତେ
ପ୍ରଭୁ ଶୁଣିଲେ କି ରକ୍ଷା ପାଇବୁ ନା ଏଥେ ।
ତୋହର କାରଣେ ମିଛୁଁ ଆମ୍ଭେମାନେ ନାଶ
ବାହୁଡ଼ିଣ ଯାଅ ଆଜ ନାହିଁ ଅବକାଶ ।
ଆର ଗୁରୁବାରେ ଆସି କରିବ ଦର୍ଶନ
ଏଥିକି ଅସୁଖ ଆଉ ନ ଧରିବ ମନ ।
ତୋତେତ ଗଞ୍ଜିବେ ପୁଣି ଦଣ୍ଡିବେ ଆମ୍ଭଙ୍କୁ
ଦୁଇକୁଳ ପରାଭବ ହେବା ଏ କଥାକୁ ।
ତୁମ୍ଭ ଅଟ ଠାକୁରାଣୀ ବିଷ୍ଣୁ ମନୋହାରୀ
କେତେବେଳେ କି ଦର୍ଶନ ନ ହେବ ତାଙ୍କର
ବିଜୟ ଦ୍ୱାରୀ ବଚନ ଶୁଣି ଯୋଷାମଣି
ତାହାର ଆଗରେ କଥା କହନ୍ତି ବଖାଣି ।
ଯାହା କହୁଛୁ ଅଛନ୍ତି ବ୍ରହ୍ମା ପୁରନ୍ଦର
ଆଉର ଅନନ୍ତ ଋଷି ଯେତେ ଯେତେ ସୁର ।
ସେମାନେ ସର୍ବେ ଅଟନ୍ତି ମୋହର ନନ୍ଦନ
ତାହାଙ୍କୁ ମୋହର ନାହିଁ ବାହ୍ୟାନ୍ତର ଜ୍ଞାନ ।
ତ୍ରିଲୋକ ଜନନୀ ମୁହିଁ ନ ଜାଣୁକି ତୁମ୍ଭ
ତାହାଙ୍କର ଥିଲେ ମୋର ଯାଏ ଆସେ ନାହିଁ ।
ତୁମ୍ଭେତ ଏବେ ମୋହର ସଙ୍ଗତରେ ଥିବୁ
ଯେମନ୍ତେ ବିଧାନ ହେବ ତା କି ନ ଦେଖିବୁ ।
ମୋତେ ଦେଖିଣ ସମସ୍ତେ ହେବେ ପ୍ରଣିପାତ
ଗୀତ ବାଦ୍ୟ ନୃତ୍ୟ ସବୁ ହୋଇବ ରହିତ ।
ବିଜୟ ବୋଲେ ସେ କଥା ମୁହିଁ ନ ଜାଣଇ
ତୋତେ ଯେଣ ମୁଁ କେମନ୍ତେ ସେଠାକୁ ଯିବଇଁ
ଯେତେ ସୁହୃଷମ ହେଲେ ହେଉନ୍ତୁ ତୋହର
ଯେ କାଳେ ସର୍ଗରେ ଛନ୍ତି ସକଳ ଅମର ।
ମାତା ବା ଭଗିନୀ ହେଉ ହେଉ ଗୁରୁନାରୀ
ସଭାସ୍ଥଳକୁ ଯିବାର ନିଷେଧ ସବୁରି ।
ଅଳଙ୍କୃତ ପଶି ଯେବେ ଦେଖନ୍ତି ତାଙ୍କର
ପୂର୍ବ ହେଲେ ସୁଦ୍ଧା ନିନ୍ଦା କରଇ ଅପାର ।
ତୁ ଗଲେ ଦେବତାମାନେ ହେବେ ପ୍ରଣିପାତ
ଲାଜ ନ କଲା ବୋଲି ସେ ବିସ୍ମରିବେ ଚିତ୍ତ ।

ପୁତ୍ରର ମାତା ହେଲେ କି ସହାନ୍ତେ ଯାଇ
ଏମନ୍ତକଥା ଜନନୀ ଗୋ ବିହିତ ନୁହଇ
ଆମ୍ଭେ ବେନି ଯେତେବେଳେ ଥିଁଟୁ ତୋରସୁତ
ଆମ୍ଭଙ୍କୁ ସଙ୍କୋଚ ହେଉ ନିଷେଧ ନିଯୁକ୍ତ
ତୁ ସେଠାରେ ଗଲେ ଲାଜ ଆମ୍ଭଙ୍କୁ ଅପାର
ତୋତେ ଲାଜନାହିଁ ବୋଲି ହେଉ ଆଗୁସାର
ମହାଲକ୍ଷ୍ମୀ ବୋଇଲେ ମୁଁ ସବୁଠାରେ ଥାଏ
ତେଣୁକରି ଜଗତକୁ ଅତି ସୁଖ ପାଏ ।
ଉଠ ଉଠ ଆରେ ବାବୁ ହେଉଛୁ ଉଚ୍ଛୁର
କେତେବେଳେ ଭ୍ରମିବି ମୁଁ ଏସବୁ ସଂସାର ।
ଦ୍ୱାର ମାଡ଼ି ବେନିଭାଇ ଜଗି ବସିଛନ୍ତି
ଶ୍ରୀଲକ୍ଷ୍ମୀ ଦେବୀଙ୍କ କଥା କର୍ଣ୍ଣେ ନ ଶୁଣନ୍ତି
ପୁଣି ଶ୍ରୀଲକ୍ଷ୍ମୀ ବୋଲନ୍ତି ଉଠ ବେନିଭାଇ ·
ଶୁଣିକରି ଜୟବୀର ବୋଲେ କୋପହୋଇ ।
ଆମ୍ଭେ ଦ୍ୱାର ନ ଛାଡ଼ିବୁ ତୋହର କଦାଚିତେ
ତୁହି ଆଗୋ ପଦ୍ମାସନ କଷ୍ଟ କରୁଛୁ କେତେ ।
ଓଷ୍ଠ ଚିପି ବୁଲାଇଲେ ଆଖି ବଡ଼କରି
କୋପେ ମହାଲକ୍ଷ୍ମୀ ତହୁଁ ବାହୁଡ଼ିଲେ ଡରି ।
ପୁଣି ରଷିଣ ବୋଲନ୍ତି ଶୁଣ ବେନିଭ୍ରାତେ
ରାକ୍ଷସ ପ୍ରକୃତି ଧରି ଡ଼ରାଇଲ ମୋତେ ।
ସ୍ୱାମୀଙ୍କର ସେବା ମୋର ବ୍ୟର୍ଥ କରିଲ
ଅନେକ ମୋତେ ତୁକାର ଘଷାର୍ଣ୍ଣି କହିଲ ।
ଦର୍ଶନ କରି ଆସନ୍ତି ପ୍ରଭୁ ପାଦ ଦୁଇ
ଖଣେହେଁ ମଠ ନ କରି ଫେରିଥାନ୍ତି ମୁହିଁ
ଆଜି ସ୍ୱାମୀଙ୍କୁ ମୋହର କଲେ ଦରଶନ
କୋଟି ତୀର୍ଥ ଫଳ ମୋତେ ମିଳିଥାନ୍ତା ଜାଣ ।
ଏଡ଼େ ଲାଭକୁ ମୋହର କଲରେ ବ୍ୟର୍ଥ
ଦୈତ୍ୟ ହୋଇ ଜନ୍ମ ହୁଅ ତୁମ୍ଭେ ଜନ୍ମ ସାତ
ଶାପ ଦେଇଣ ଚଞ୍ଚଳା ନିଜପୁରେ ଗଲେ
ମନ ବିରସେ ସେ ଦିନ ପୃଥ୍ୱୀ ନ ବୁଲିଲେ ।
ଯହୁଁ ମହାଲକ୍ଷ୍ମୀ ଗଲେ ତାଙ୍କୁ ଶାପ ଦେଇ
ଭୟକରି ବେନିଭାଇ ରହିଛନ୍ତି ତହିଁ ।
ଦୁଇଭାଇ ପଚାରନ୍ତି କୁହାକୁହି ହୋଇ
ଭଲ କହିଲୁ ଗଲେ ଏବେ ଶାପ ଦେଇ ।
ସ୍ୱାମୀଙ୍କର ଅଗେ ଆଜି କହିବା ଏମାନ
ଶୋକଭରେ ଦୁଇଭାଇ ଛନ୍ନ ଛନ୍ନ ମନ

ଝଷ୍ଠାରୁ ଦେବତାଏ ଯାନ୍ତି ବିଦା ହୋଇ
କମଳାଙ୍କ କୋପକଥା କହିବାକୁ ଯାଇ ।
କିବା ହୋଇ ଏ ଦୁଃସହ ଶାପକୁ ବହିଲେ
ସାନଜନ୍ମ ଯାଏ ଦୈତ୍ୟ ହୁଅରେ ବୋଇଲେ
ଏମନ୍ତ ବିଚାର ତହିଁ କରୁଛନ୍ତି ଦୁଇ
ଏଥୁଅନନ୍ତରେ ତୁମ୍ଭେ ଶୁଣ ନରସାଇଁ ।
ଦେବତାଏ ବିଷ୍ଣୁପାଶେ ଉଭା ହୋଇଥିଲେ
ପ୍ରଭୁଙ୍କୁ ମେଲାଣି ମାଗି ନିଜ ଗୃହେ ଗଲେ
ଦେବତାଏ ଗଲେ ଯହୁଁ ନ ରହିଲେ କେହି ।
ସ୍ୱାମୀ ନିକଟେ ମିଳିଲେ ତହୁଁ ଦୁଇଭାଇ
ଗଦାବର ଥୋଇଦେଇ ପଡ଼ି ପାଦତଳେ
ଶ୍ରୀମୁଖ ଚାହିଁ ରୋଦନ କରନ୍ତି ବିକଳେ ।
ମଣିମୟ ସିଂହାସନେ ଦେବ ବସିଛନ୍ତି
କୋଟି କୋଟି ବିଷ୍ଣୁଗଣ ଚାମର ଢ଼ାଳନ୍ତି
ତାହାଙ୍କୁ ଚାହିଁ ବୋଲନ୍ତି ପ୍ରଭୁ ଜଗନ୍ନାଥ
କିମ୍ପାଇଁ ରୋଦନ କର ଉଠ ବେନିଭ୍ରାତ
ନାରାୟଣ ଆଜ୍ଞାପାଇ ଉଠିଲେ ସେ ବୀର
କିମ୍ପା କାନ୍ଦୁଛ ପୁଚ୍ଛନ୍ତି ବ୍ରହ୍ମାଣ୍ଡ ଠାକୁର
ଶିରେ କରଯୋଡ଼ି ତହୁଁ ବୋଲନ୍ତି ସେ ବେନି
ଚଉଦ ଭୁବନ ସ୍ୱାମୀ ଶୁଣ ଚକ୍ରପାଣି ।
ଆଜିତ ମକର ମାସ ଆଦ୍ୟ ଗୁରୁବାର
କମଳା ପ୍ରବେଶ ହେଲେ ଆସି ସିଂହଦ୍ୱାର ।
ଯେତେବେଳେ ଦେବତାଏ ଥିଲେ ତୁମ୍ଭ ପାଶ
ସାହାଣ ମଣ୍ଡପେ ପଥ ନ ମିଳଇ ଲେଶ ।
ଆମ୍ଭ ଦୁହିଁଙ୍କୁ ବୋଇଲେ ଭିତରକୁ ଯିବି
ସ୍ୱାମୀ ଦରଶନ କରି ବାହୁଡ଼ି ଆସିବି ।
ଦ୍ୱାର ଛାଡ଼ିଦିଅ ମୋତେ ତୁମ୍ଭେ ବେନିଭାଇ
ତାହାଙ୍କ ବଚନ ଶୁଣି ବୋଇଲୁଁ ମୁହିଁ ।
ଦେବତା ଗହଣେଛନ୍ତି ପ୍ରଭୁ ଚକ୍ରପାଣି
ଏତେବେଳେ କେମନ୍ତେ ଗୋ ଯିବ ଠାକୁରାଣୀ
ଆନ ଦିନେ ଆସି ପଛେ କରିବ ଦର୍ଶନ
ନିଅବକାଶେ ଅଛନ୍ତି ପ୍ରଭୁ ଭଗବାନ ।
ଏବେବେଳରେ ତେଣିକି ଯିବ ମା କେମନ୍ତେ
ଦେଖିଲେ କୋପ କରିବେ ଯିବା ସ୍ୱାମୀ ମୋତେ
ଚଞ୍ଚଳା ବୋଇଲେ ଛାଡ଼ ଦିଅରେ କୁମର
କୋପ ନ କରିବେ ମୋତେ ଦେଖି ଚକ୍ରଧର

ଆମ୍ଭେତ ଗ୍ଲାନ୍ତ ନ ହେଲୁ ଦ୍ୱାର କଦାଚିତ
ତର୍କିକ କମଳା କୋପକଲେ ଅପ୍ରମିତ ।
ଭଲ କହନ୍ତେ ଅହିତ ମନରେ ଘେନଲେ
ସାତଜନ୍ମ ଦୈତ୍ୟ ହୁଅ ବୋଲି ଶାପ ଦେଲେ
ଏଥିରେ ଆମ୍ଭର ଦୋଷ କସ ଭଗବାନ
ଏତେକହି ବେନଭାଇ କରନ୍ତି ରୋଦନ ।
ଶୁଣିଣ କୃପିଲେ ପ୍ରଭୁ ଆପଣାର ଓଷ୍ଠ
ତନୁ ଥର ଥର କୋପେ କମ୍ପଇ ମୁକୁଟ ।
ଏ ଗୁର କଥାକୁ କମ୍ପା ଗୁରୁ ଶାପ ଦେଲ
ବହୁତ ଗର୍ବ କି ଏବେ କମଳାର ହେଲ ।
ଏହିକ୍ଷଣି ତାହାକୁ ମୁହିଁ କରନ୍ତି ନିରାସ
ହେଲଣି ତ ଶାପ ଆଉ ପ୍ରୟୋଜନ କସ ।
ଭଲ କଥାକୁ କମ୍ପାଇଁ ମନ ଦହିଲ
ବିଶ୍ୱାସୀ ଭୃତ୍ୟଙ୍କୁ ମୋର ଏତେ ଦଣ୍ଡ ଦେଲ ।
ଆଉ ସଂସାର ଜନଙ୍କୁ ନକରିବ କସ
ନିଜ ଭୃତ୍ୟକୁ ଯାହାର ଦୟା ନାହିଁ ଲେଶ ।
କହୁଁ କହୁଁ ପ୍ରଭୁଙ୍କର କମ୍ପେ କଳେବର
ଭୃତ୍ୟପାଇଁ କମଳା ଗୋ ଶାପ ଘେନ ମୋର ।
ତୁହି ଏବେ ପୃଥିବୀରେ ଯାଇ ଜାତହୁଅ
ତୁହି ବେନ ଭାଇ ହସ୍ତେ ପରାଭବ ପାଅ ।
ଯେ ଯାହା ବୋଲଇ ତାହା ନ ହୋଇବ ଆନ
ଅସୁର ରୂପରେ ଜାତ ହୁଅ ତିନ ଜନ୍ମ ।
ଆଉ ଚାରିଜନ୍ମ ଶାପ ଖଣ୍ଡିଲି ତୁମ୍ଭର
କାଶ୍ୟପ କୁଳେ ପ୍ରଥମେ ହୁଅ ଅବତାର ।
ମୁହିଁ ଅବତାର ହୋଇ କରିବି ନିଧନ
ଅନ୍ୟ କେହି ମାରିବାକୁ ନୋହିବେ ଭାଜନ ।
ମୋହର ହସ୍ତରେ ମଲେ ମୋକ୍ଷ ହୋଇଯିବ
ସେହି ସକାଶରୁ ଆନ ହସ୍ତେ ନ ମରିବ ।
ଯେବଣ ତନ ଦେଖୁଛ ଅଛୁ ଆମ୍ଭ କର
ଏଥିରେ ଛେଦନ ହେଲେ ହୋଇଯିବ ପାର ।
ଜନ୍ମେ ଜନ୍ମେ ନାଶଯାଇ ମୋର ପୁରେ ଥିବ
ତିନଜନ୍ମ ଅନ୍ତେ ତେବେ ନିଶ୍ଚିନ୍ତେ ରହିବ ।
ସେହି ଦିନରୁ ତୁମ୍ଭଙ୍କୁ ଜନ୍ମ ମୃତ୍ୟୁ ନାହିଁ
କାଶ୍ୟପ କୁଳରେ ଜନ୍ମ ହୁଅ ବେନଭାଇ ।
ଏକ୍ଷଣି ମୁକ୍ତ ତୁମ୍ଭର ଆଉ ହେବ ନାହିଁ
ବୈବସ୍ୱତ ମନୁ କାଳେ ମୁକ୍ତ ହେବ ଯାଇ ।

ଦୁଃସହ ଶାପ ଦେଲତ କି କରିବ ବାବୁ
ପୁଣି ଦ୍ୱାରପାଳ ହୋଇ ରହିବରେ ସବୁ ।
ତୁମ୍ଭେ ଚାଲିଗଲେ ଶୂନ୍ୟ ହେବ ମୋର ଦ୍ୱାର
ମୁଁ ରହିବି ଏ ଠାବରେ କେବଣ ପ୍ରକାର ।
ତୁମ୍ଭେ ଦୁହେଁ ଯେଉଁଠାରେ ଜନ୍ମହେବ ଯାଇ
ତୁମ୍ଭର ଗୃହରେ ସଦା ରହିଥିବ ମୁହିଁ ।
ତୁମ୍ଭେ ବେନଭାଇ ଅଟ ମୋର ଇଷ୍ଟଭୂତ
ତୁମ୍ଭ ଶାପ ସମସ୍ତଙ୍କୁ ହୋଇଲା ଅହିତ ।
ତୁମ୍ଭେମାନେ ହୋଇଅଛ ଯେତେକ ବିଶ୍ୱାସୀ
ତେତେକ ଆମ୍ଭ ଠାବରେ ହେବ ଅବିଶ୍ୱାସୀ ।
ଏଠାବର ଜ୍ଞାନ ସବୁ କିଛି ନ ରହିବ
ଆମ୍ଭର କଥା ଶୁଣିଲେ ଶରୀର କମ୍ପିବ ।
ମୋହର ରୂପ ତୁମ୍ଭଙ୍କୁ ଦିଶୁଥିବ ବିଷ
ଶତ୍ରୁତା ପଣ କରିଣ ଯାଉଥିବ ନାଶ ।
ଯହୁଁ ଶ୍ରୀମଦ୍ ନାରାୟଣ କହିଲେ ଏ ବାଣୀ
ସନ୍ତୋଷରେ ବାହୁଡ଼ିଲେ ବେନି ଭାଇ ଶୁଣି ।
କେତେଦିନାନ୍ତେ ସେମାନେ ହୋଇଲେ ପତନ
ସୂକ୍ଷ୍ମ ରୂପେ ଗର୍ଭେ ଏକ ହେଲ ଅଧିଷ୍ଠାନ ।
ଦିତିଙ୍କ ଗର୍ଭରେ ଯାଇ ହୋଇଲେ ସମ୍ଭୂତ
ହିରଣ୍ୟ ନାମେ ଧରାରେ ହୋଇଲ ଦଇତ ।
ବିଜୟର ଆତ୍ମା ଗୋଟି ଗୃହରେ ରହିଲ
ହିରଣ୍ୟ ଜନ୍ମ ବର୍ଷାନ୍ତେ ଗର୍ଭସ୍ଥାୟୀ ହେଲ ।
ଜୟ ବିଜୟ ବିଷ୍ଣୁଙ୍କ ଦ୍ୱାରେ ଥିଲେ ଦ୍ୱାସୀ
ସେ ଏବେ ଜନ୍ମିଲେ ଦିତି ଗର୍ଭ ଆଶ୍ରାକରି ।
କହିଲୁଁ ବେନି ଭାଇଙ୍କ ପୂର୍ବର ବ୍ୟବସ୍ଥା
ଏ ଦୁହେଁ ଆଦ୍ୟ ଅସୁର ପଦ୍ମକଳ୍ପ କଥା ।
ଏ କଥା ଶୁଣି ସନ୍ତୋଷ ହୋଇ ନୃପବର
ପ୍ରଣମିତ ହେଲେ ଯାଇଁ ମୁନିଙ୍କ ପୟର ।
ବୋଇଲେ ଏ ବିଷ୍ଣୁକଥା ତବ ମୁଖୁ ଶୁଣି
ନିସ୍ତରୁ ପାର ହୋଇବି ଭବ ତରଙ୍ଗିଣୀ ।
ବରାହ ପୁରାଣ ଏହୁ ଅଟେ ମୋକ୍ଷ ବାଟ
କହିଲେ ଶୁକ ଶୁଣନ୍ତି ଅଭିମନ୍ୟୁ ସୁତ ।
ବରାହ ନାରାୟଣଙ୍କ ଚରଣ କମଳେ
ଶରଣ ପଶଇ କାମପାଳ ସଦାକାଳେ ।

— ୦ —

## ହିରଣ୍ୟ ହିରଣ୍ୟାକ୍ଷର ବାଲ୍ୟକ୍ରୀଡ଼ା ଓ ଅସ୍ତ୍ରଶିକ୍ଷା ଏବଂ ମର୍ତ୍ତ୍ୟଲୋକ ଭ୍ରମଣ

ପରୀକ୍ଷ ବୋଲୁଅଛନ୍ତି ଶୁଣିଲି ସମସ୍ତ
ଏବେ କହିବା ହେଉନ୍ତୁ ଦଇତ୍ୟ ଚରିତ ।
ହିରଣ୍ୟ ହିରଣ୍ୟାକ୍ଷର କି ବିଧାନ ହେଲେ
କାଶ୍ୟପ ସେହିମାନଙ୍କୁ କେମନ୍ତେ ପାଳିଲେ ।
ଜଗତରେ ଉପଦର୍ପ କଲେ କାହିଁ କାହିଁ
କାଶ୍ୟପ ଶାସନ କରି ରଖନ୍ତି କି ନାହିଁ ।
ଏହା ପ୍ରକାଶ କରିଣ କୁହ ତପସ୍ୱୀ
ତବ ମୁଖରୁ ସମସ୍ତ ଶୁଣିବି ବିସ୍ତାରି ।
ଏ ମାୟା ସଂସାରେ ମୋର ପ୍ରୟୋଜନ ନାହିଁ
ବିଷ୍ଣୁ କଥା ଶୁଣୁଥିବି ଯେତେ ଦିନ ଥାଇ ।
ହରିକଥା ବିନୁ ମୋତେ ନ ରୁଚଇ ଆନ
କର୍ଣ୍ଣପଥେ ଶୁଣୁଥିବି ମୁଖେ କରି ଗାନ ।
ତୁମ୍ଭେ ମହାମୁନି ଅଟ ମୋର ମହାଗୁରୁ
ବିଷ୍ଣୁ କଥା କୁହ ମୋତେ ପାପ ଅପସରୁ ।
ଶୁକ ମୁନି ବୋଇଲେ ତୁ ଅଟୁ ପୁଣ୍ୟଦେହୀ
ତୋ ପରି ଶ୍ରୋତା ସଂସାରେ ନ ଥିବ ଯେ କେହି
ପ୍ରାଣାନ୍ତେ ନଷ୍ଟପ୍ରୁ ତୁହି ଯିବୁ ବିଷ୍ଣୁପୁରେ
ଲକ୍ଷ୍ମୀ ନାରାୟଣ ନିତ୍ୟ ଛନ୍ତି ତୋର ଘରେ ।
ଭକତର ପାଖ ସେହୁ ଦଣ୍ଡେ ନ ଛାଡ଼ନ୍ତି
ଭକ୍ତହିତେ ହରିଯାକୁ କୋପିଲେ ଶ୍ରୀପତି ।
ନୃପତି ବୋଇଲେ ଦେବ ସେ କଥା ପ୍ରମାଣ
ଭକତବତ୍ସଳ ସ୍ୱାମୀ ଜଗତ ତାରଣ ।
ମୁଁ କେଉଁ ଭକ୍ତେ ଗଣିତା ଅଟଇ କହିତ
ଛାଡ଼ ସବୁକଥା କୁହ ପୁରାଣ ଚରିତ ।
କହନ୍ତି ଶ୍ରୀ ଶୁକମୁନି ଶୁଣ ନୃପବର
ଦିତିଦେବୀ ଯତ୍ନକରି ପାଳନ୍ତି କୁମର ।
ଦେଖିଣ ଜନନୀଙ୍କର ଉଲ୍ଲସଇ କାୟା
ଆବର ତାଙ୍କର ପ୍ରତି ରଖିଥାନ୍ତି ଦୟା।
ସୁରଭୀର କ୍ଷୀରପାନ ବଳବାନ ପୋଷେ
କାଶ୍ୟପଙ୍କ ବରେ ମଧ୍ୟ ବଢ଼ନ୍ତି ତଙ୍କ ନାସ୍ତେ ।
ହିରଣ୍ୟାକ୍ଷ ପଡ଼ିମାଧେ କନ୍ଧ ଗଡ଼ାଉଛି
ଦେଖି ଆନନ୍ଦ ହୁଅନ୍ତି ତାର ପିତାମାତ
ବେନି ପୁତ୍ରଙ୍କର ପୁଣି କର୍ଣ୍ଣଭେଦ କଲେ
ସୁବର୍ଣ୍ଣ କୁଣ୍ଡଳ ବେନି କର୍ଣ୍ଣରେ ଭରିଲେ ।
ଦେବାଙ୍ଗ ବସ୍ତ୍ର ପିନ୍ଧନ୍ତି ହସ୍ତରେ କଙ୍କଣ
ସାହୁ ପଗଡ଼ି ବାନ୍ଧନ୍ତି ସେ ବେନି ନନ୍ଦନ ।
ଆଠ ନଅ ବରଷର ହେଲେ ବେନି ଭାଇ
ଭୁଜ ଦୁଇ ମୋଟ ବକ୍ଷ ବିସ୍ତାର ଦିଶଇ ।
କେତେବେଳେ ମାତାଙ୍କର ବାକ୍ୟ ନ ମାନନ୍ତି
କେତେବେଳେ କାଶ୍ୟପଙ୍କୁ ଗାଳି ଦେଇଯାନ୍ତି
ତାଙ୍କ ଦୋଷକୁ ଶୋଚନା ନାହିଁ କାର ମନେ
କ୍ରୋଧେ ଧରି ପିତାମାତ ତୋଷି ଚୁମ୍ବଦାନେ
ଦିନେ ଦିନେ ସ୍ୱର୍ଗପଥେ ବୁଲିବାକୁ ଯାନ୍ତି
ଗନ୍ଧର୍ବ ବାଳକ ସଙ୍ଗେ ମରାମରି ହୁଅନ୍ତି ।
ଏମନ୍ତ ଶୁଣି କାଶ୍ୟପ ଚଳନ୍ତି ଅପାରେ
ଶୁଣି ପୁତ୍ରେ ତୁନି ହୁଅନ୍ତି ନ ଦେଇ ଉତ୍ତର ।
ମାତା ତିଆରି କହନ୍ତି ଶୁଣ ବାପଧନ
ଦେବ ସଙ୍ଗେ କଳି କମ୍ପା କରୁଛ ଅର୍ଜନ ।
ଆଜଠାରୁ ବାବୁମାନେ କେଉଁଠିକି ନ ଯିବ
ମୋହର ପାଖରେ ଥାଇ ଘରେ ଖେଳୁଥିବ
ଏମନ୍ତ କହିଣ ସର ଅଧାମ ଦିଅନ୍ତି
ତାହା ଭୁଞ୍ଜି ଦୁଇ ଭାଇ ପୁରେ ବୁଲୁଥାନ୍ତି ।
କେତେବେଳେ ପଲଙ୍କରେ ପଡ଼ିଥାନ୍ତି ଶୋଇ
କେତେବେଳେ ପିତାଙ୍କର ପାଦେଥାନ୍ତି ରହି ।
ତାଙ୍କ ଖେଳ କଉତୁକ କାଶ୍ୟପ ଦେଖନ୍ତି
ସବୁ ପାଶୋରି ମନରେ ଆନନ୍ଦ ହୁଅନ୍ତି ।
ଏଥୁ ଅନନ୍ତରେ ଶୁଣ ଆହେ ନୃପନାଥ
କାଶ୍ୟପ ବ୍ରାହ୍ମଣକୁଳେ ଦୈତ୍ୟ ହେଲେ ଜାତ
ବନ୍ଧୁତ ଆର୍ଦ୍ଧୋଳିମାନ ତାଙ୍କର ସହନ୍ତି
ମାତାପିତା ପୁତ୍ରଙ୍କର ଦୋଷ ନ ଧରନ୍ତି ।
ବ୍ରତ ବନ୍ଧ କରିବାକୁ ବିଚାରନ୍ତି ମନ
ସଞ୍ଚୟ କରିଲେ ଋଷି ସର୍ବ ଦ୍ରବ୍ୟମାନ ।
ଘୃତ ସମିଧ ଚନ୍ଦନକାଷ୍ଠ ସମ୍ପାଦିଲେ
ଅଖଣ୍ଡ ଜରି ଅମ୍ଳାନ ବସ୍ତ୍ର ତିଆରିଲେ ।

ବିଶ୍ବକର୍ମାଙ୍କୁ ଡକାଇ ଦେଲେ ଆଜ୍ଞା ଦାନ
ବେଗେ ସୁମୁଣ୍ଡିଆ କର ଯେତେକ ପ୍ରୟୋଜନ ।
ଆଜ୍ଞା ପରମାଣେ ଗଲେ ସ୍ବର୍ଗର ବଢ଼େଇ
ବେଗେ ସୁମୁଣ୍ଡିଆ କଲେ ରତ୍ନ ଖଞ୍ଜି ଦେଇ ।
ମାହେନ୍ଦ୍ର ଯୋଗରେ ବ୍ରତ ବିଧି ଆରମ୍ଭିଲେ
ହିରଣ୍ୟଙ୍କୁ ବଇଶାଖ ମାସେ ବ୍ରତ କଲେ ।
ଆପଣେ ବେଦ ବାକ୍ୟରେ ଆହୁତି ଦିଅନ୍ତି
ସୁବର୍ଣ୍ଣ ପଇତା ପୁଅ ହୃଦରେ ଲମ୍ବନ୍ତି ।
ଦଣ୍ଡ ଦେଇ ବେଦ କହି ପୁତ୍ରର କର୍ଣ୍ଣରେ
ସମ୍ପୂର୍ଣ୍ଣ କରିଲେ ବ୍ରତ ବିଧାନ ପ୍ରକାରେ ।
ଅଗ୍ନିକି ସନ୍ତୋଷ କରି ପୁତ୍ର ଯେତେବେଳେ
ହିରଣ୍ୟ ଦଇତ୍ୟ ଦ୍ବିଜ ଜଗତେ ବୋଇଲେ ।
ହିରଣ୍ୟାକ୍ଷଙ୍କୁ ଅଷ୍ଟମ ବର୍ଷ ହେଲା ଯହୁଁ
ତାଙ୍କୁ ମଧ୍ୟ ସେହି ରୂପେ ବ୍ରତ କଲେ ତହୁଁ ।
ବ୍ରତ ହୋଇଲେ ଯହୁଁ ବିଦ୍ୟା ପଢ଼ାଇଲେ
ଆବର ବେନି ଭାଇଙ୍କୁ ବେଦ ଶିକ୍ଷା ଦେଲେ ।
ବ୍ରାହ୍ମଣଙ୍କ ବେଶ ଗୁଡ଼ ଋଷି ବେଶ ହୋଇ
ସନ୍ଧ୍ୟା ବେଦ ପାଠ ଅବା ନ ପଢ଼ିଲେ କେହି ।
କଶ୍ୟପ ବୋଇଲେ ବେଦ କପାଳେ ନ ପଢ଼
ଦ୍ବିଜ ବେଶ ଗୁଡ଼ କମ୍ପା ଋଷି ବେଶ ମୂଢ଼ ।
ମୁନି ଉପେ ବେଦ ପୋଥି ଧରି ପଢ଼ୁଥାନ୍ତି
ସେହୁ ଆଢ଼ ହେଲେ ପୋଥି ବାନ୍ଧି ରଖିଦିଅନ୍ତି
ମାତା ବୋଲନ୍ତି ନ ବାନ୍ଧ ପଢ଼ୁଥାଅ ବସି
ଜନକ ଦେଖିଲେ କୋପ କରିବେଟି ଆସି ।
ମାତାଙ୍କ ବଚନ ଶୁଣି କର୍ଣ୍ଣ ଯାଏ ଦେହ
ନିତି ବସି କଏ ପାଠ ପଢ଼ିବ ଗୋ କହ ।
ଏବେ ସାଧନ କରନ୍ତୁ ଋଷି ବୃତ୍ତିମାନ
ବେଦପଢ଼ା ଆମ୍ଭର ତ ହେଲାଣି ସମ୍ପୂର୍ଣ୍ଣ ।
ଋଷି ବୃତ୍ତିକି ଆମ୍ଭର ମନ ଅଛି ମାତଃ
ପିତା ଆଗେ କୁହ ତୁମ୍ଭେ ଏ ସବୁ ଚରିତ ।
ତାହା ଶୁଣିଣ ଜନନୀ ପିଢ଼ନ୍ତି ଅଧର
ବ୍ରାହ୍ମଣ ପୁତ୍ର ହୋଇ କି ହେବ ଧନୁର୍ଦ୍ଧର ।
ଆମ୍ଭ କୁଳକୁ ସେ ବିଦ୍ୟା ନ ଯୋଗାଏ ବାବୁ
ଋଷିମାନେ ସିନା ତାହା ସାଧୁଥାନ୍ତି ସବୁ ।
ମାତାଙ୍କ ବଚନ ଶୁଣି ସେ ବେନି ଦଇତ
ତାହାଙ୍କ ଚରଣ ଧରି ହେଲେ ପ୍ରଣିପାତ ।

ବାଦ କରନ୍ତି ସାଧିବୁଁ ଆମ୍ଭେ ଋଷିପଣ
ତୁମ୍ଭେ ଜାଣ ନାହିଁ ମାତା ଏହାର ଯେ ଗୁଣ ।
ଆମ୍ଭମାନଙ୍କ ଶରଧୀ ହୋଇଛି ବହୁତ
ତୁମ୍ଭେ ନାସ୍ତି ନ କର ଗୋ ଆମ୍ଭର ସେ ବ୍ରତ ।
ଭୁଜ ଧରି ତୋଷି ମାତା ବୋଲନ୍ତି ବଚନ
ସେହି ନଚଶ୍ରୀ ବିଦ୍ୟାକୁ ନ କର ସାଧନ ।
ସେ ବିଦ୍ୟା ସାଧିଲେ କୋପ ହୁଅଇ ବହୁତ
ଅଧର୍ମ ଆସିଣ ତହୁଁ ହୁଏ ପରାପତ ।
ଆବର ଚିରାୟୁ ହୋଇ ସେହୁ ନ ରହନ୍ତି
କହୁଅଛି ଶୁଣ ବାବୁ ପୂର୍ବର ଭାରତୀ ।
ଅନେକ ପୁତ୍ର ମୋହର ହୋଇଥିଲେ ଜାତ
ସେସାନେ ଅସ୍ତ୍ରବିଦ୍ୟାକୁ ସାଧିଲେ ସମସ୍ତ ।
କାଳେ ଦେବ ଦୈତ୍ୟ ମିଶି ସମୁଦ୍ର ମନ୍ଥିଲେ
ଅମୃତ ଭୋଜନଠାରେ ମହାରଣ ହେଲେ ।
ତହୁଁ କରେ ଚକ୍ର ଧରି କୋପେ ଚକ୍ରପାଣି
ସର୍ବ ପୁତ୍ରଙ୍କୁ ମୋହର ପକାଇଲେ ହାଣି
ତେଣୁକରି ଆରେ ପୁତ୍ର କହୁଆଛି ତୁମ୍ଭଙ୍କୁ
ଅପ୍ରୀତି ନୋହିବ ବାବୁ ଶ୍ରୀନାରାୟଣଙ୍କୁ ।
ତାଙ୍କୁ ଦେଖି ନମସ୍କାର କରୁଥିବ ନିତି
ତାଙ୍କଠାରେ ଭକ୍ତି ରଖି ହେବ ନମ୍ରମତି ।
ଦେବତାମାନଙ୍କ ସଙ୍ଗେ ନ କରିବ ଦ୍ବନ୍ଦ
କଲେ ପ୍ରଭୁଙ୍କୁ ଘେନି ସେ ବଇରିବେ ମନ୍ଦ ।
ଦୈତ୍ୟଙ୍କୁ ମାରି ତାଙ୍କର ନାମ ଦଇତାରି
ତାଙ୍କ ସଙ୍ଗେ ବାବୁ କେବେ ନୋହିବ ଭଗାରି
ମାତାଙ୍କ ମୁଖରୁ ଶୁଣି ଏମନ୍ତ ବଚନ
କୋପେ ବୋଲନ୍ତି ସେ ବେନି ନନ୍ଦନ ହୋଇଣ
ଆମ୍ଭଙ୍କୁ ତାଙ୍କୁ ଯେବେ ସେହୁ ଅଛି ମାରି
ସ୍ବଭାବେ ତ ହେଲା ସେହୁ ଆମ୍ଭର ବଇରୀ ।
ତାହାଠାରେ ଭକ୍ତି ଆଉ ହୋଇବ କେମନ୍ତ
ଅସ୍ତ୍ରବିଦ୍ୟା ସାଧି ତାକୁ କରିବା ନିହତ ।
ହିରଣ୍ୟ କହିଲା ଯହୁଁ ଏ ପ୍ରକାର ବାଣୀ
ଶୁଣି ଜିହ୍ବା କାମୁଡ଼ିଲେ ଦନ୍ତ ଠାକୁରାଣୀ ।
ବୋଇଲେ ଆରେ କୁମରେ କଥା ନ କହ ତୁମ୍ଭେ
ବଜ୍ର ଧରି ପକାଇଲ ଆଣି ମୋର ମୁଣ୍ଡେ ।
ସେହି ତ ଜଗତ୍ତାରଣ ପ୍ରଭୁ ଜଗନ୍ନାଥ
ଆଉ ବଦନେ ଏମନ୍ତ ପଣ ନ ବୋଲିବୁ ସୁତ ।

ସ୍ତୁତି ମୋହର ସନ୍ମୁଖରେ ବୋଇଲୁଟି ଯାହା
ଅନ୍ତର୍ଯାମୀ ନାଥ ତେଣେ ଜାଣିଲେଣି ତାହା ।
ସର୍ବଘଟେ ସର୍ବଭୂତେ ରହିଛନ୍ତି ପୁତ୍ର
ଜଳ ଅଗ୍ନି ଗଗନ ସ୍ଥଳ ଆଦି କରି ।
ଏ କଥା ଶୁଣିଲେ ପିତା ହୋଇବେଟି ମନ୍ଦ
ପୁଣେ ପୁଚ୍ଛନ୍ତି କପର ଅଟଇ ଗୋବିନ୍ଦ ।
କହ ଗୋ ଶୁଣିବୁ ତାର କେଉଁଣ ନିଶ୍ଚୟ
କହୁ ଜଣେ ବୋଲି ତାକୁ ଟେକିଲୁ ଗୋମାତଃ
ଶୁଣି ହସି କହିଲେ ସେ ଜଗତ ଈଶ୍ୱର
ଚଉଦ ଭୁବନ ଲୋକ ତାହାଙ୍କ କୁମର ।
ଅନନ୍ତ ମୂରତି ସେହୁ ପ୍ରଭୁ ଭଗବାନ
କେ ପୁଣି କହିବ ପାରିବ ତାଙ୍କ ବର୍ଣ୍ଣ ଚିହ୍ନ ।
ନୀଳଗଗନ ସଦୃଶେ ଶରୀରର ବର୍ଣ୍ଣ
ଯୁଗ ଯୁଗାନ୍ତେ ଅସଂଖ୍ୟ ରୂପେ ଅବତୀର୍ଣ୍ଣ ।
ଶଙ୍ଖଚକ୍ର ଗଦାପଦ୍ମ ଶାରଙ୍ଗ ଶ୍ରୀକର
ଗରୁଡ଼ାସନ ମୁରାରି ଲକ୍ଷ୍ମୀଦେବୀ ବର
ବ୍ରହ୍ମା ରୁଦ୍ର ଦେବଗଣେ ଯା ପାଦ ବନ୍ଦନ୍ତି
ତୋର ପିତା ତାଙ୍କଠାରୁ ପୁଣି ଉତ୍ପତ୍ତି ।
ସଚରାଚର ବ୍ରହ୍ମାଣ୍ଡ ଉପୁଜାଇଲେ ସେହି
ଭକତ ବତ୍ସଳ ସ୍ୱାମୀ ପ୍ରଭୁ ଭାବଗ୍ରାହୀ ।
ତାଙ୍କୁ ଭଜିଲେ ଦିଅନ୍ତି ସେହୁ ମହାଫଳ
ଅମାନିଆର ଛେଦନ୍ତି ମସ୍ତକ କମଳ ।
ସଂସାର ପ୍ରାଣିଙ୍କ ଯେହୁ ବିଚାରନ୍ତି ମନ୍ଦ
ତାହାଙ୍କୁ ନିଶ୍ଚୟ ନାଶ କରନ୍ତି ଗୋବିନ୍ଦ ।
ଦେବ ବ୍ରାହ୍ମଣ ନ ମାନି ଯେହୁ ବିନାଶନ୍ତି
ସେ ପ୍ରାଣିର ନାରାୟଣ ବଇରି ହୁଅନ୍ତି ।
ଦେବ ବ୍ରାହ୍ମଣଙ୍କୁ ଯେହୁ ନ ଦିଅନ୍ତି ଦଣ୍ଡ
ନାରାୟଣ ସେବାରେ ଭୁଞ୍ଜଇ ସେ ଅଖଣ୍ଡ ।
ଗୋ ବ୍ରାହ୍ମଣଠାରେ ଯେହୁ ସଦା ପୂଜାନରେ
ବଇରି ନ ହୁଏ ସେହୁ ସଂସାର ଜନରେ
ଏମନ୍ତ ଯେଉଁଣ ଲୋକ ନର୍ମଳ ତା କାୟା
ସେ ପୁରୁଷଠାରେ ହରି କରିଥାନ୍ତି ଦୟା ।
ତେଣୁକର କୁମତିରେ ଭୁଆଉଛୁ ତୋତେ
ଜ୍ଞାନ ଉଦେ କରି ଭଜ ସେହି ପଦ୍ମ କେତେ ।
ଅସ୍ତ୍ର ବିଦ୍ୟା ପାଇଁ ପିତା ଜନ୍ମାଇବୁ ହିଂସ୍ର
ଦେବତାଏ ଚକ୍ର ତୋତେ ବରିଷିବେ ମନ୍ଦ ।

ଏତେ କାଳଯାଏ ଥିଲି ପୁତ୍ର ଭାବେ ଦୁଃଖୀ
ତୁମ୍ଭ ଜାତ ଦେଖି ବାରୁ ହୋଇଅଛୁ ସୁଖୀ ।
ହିରଣ୍ୟ ବୋଇଲା ମୁଁ ତ ଜଗତ ଈଶ୍ୱର
ଅସ୍ତ୍ରବିଦ୍ୟା କର୍ମ ପୁଣି କଲି ସେ ବେଭାର ।
ତୁହି କର୍ମ ଆମ୍ଭଙ୍କୁ ଗୋ କହି ଉଆରଣ
ଆମ୍ଭର ସେ ପିତା ମହା ସ୍ୱୟଂ ନାରାୟଣ ।
ଆମ୍ଭ କୁଳେ ଅଛୁ କ୍ଷତ୍ରି ବୃତ୍ତି ଯେଉଁ କଥା
ଆମ୍ଭଙ୍କୁ କର୍ମ ଉଆରି ବୋଲୁଛ ଗୋ ମାତା ।
ମାତା ଏ ବୋଇଲେ ଦୁଷ୍ଟ ଜନ ନିବାରନ୍ତି
ଜଗତ ହିତକୁ ପ୍ରଭୁ ଅସ୍ତ୍ର ଧରିଛନ୍ତି ।
ସଂସାରକୁ ଜଗନ୍ନାଥ ଲୋଡ଼ନ୍ତି ଅହିତ
ଅହିତ ଜନଙ୍କୁ ସେହୁ କରନ୍ତି ନିପାତ ।
ପୁନ ହେଲେ ମଧ ପ୍ରଭୁ ଛେଦନ୍ତି ତା ଶିର
ପୃଥ୍ୱୀ ବଇରୀଙ୍କ ଦୟା ନାହିଁଟି ତାଙ୍କର ।
ମାତା ପୁତ୍ର ଏହି କଥା ହେଉଥିବା ବେଳେ
ପ୍ରବେଶ ହେଲେ କଶ୍ୟପ ଋଷି ସେହି କାଳେ ।
ତାଙ୍କୁ ଦେଖି ମାତାପୁତ୍ର ଲଜ୍ଜିତ ହୋଇଲେ
ହସ ହସ ହୋଇ ଋଷି ତାଙ୍କୁ ପଚାରିଲେ ।
କଣ ତୋ କ ବସିଚ କରି ନମ୍ର ହୋଇଣ
ପୁତ୍ରଙ୍କୁ ଘେନି ଏକତ୍ର ହୋଇ ଦୁଇଜଣ ।
ପୁତ୍ରଙ୍କୁ କି ଆଜ୍ଞା ଶିକ୍ଷା ଦେଉଛ ବସାଇ
ହସିଣ ଦିତି ବୋଲନ୍ତି ମୁଖକୁ ଅନାଇ ।
ପୁତ୍ରେ ଯାହା କହୁଛନ୍ତି ଶୁଣ ତପୋଧନ
ସେ କଥା କହୁଛି ଶୁଣ କରି ଦୃଢ଼ ମନ ।
ବୋଲନ୍ତି ସେ ବେଦବିଦ୍ୟା ପଢ଼ିଲେ ସମସ୍ତ
କ୍ଷତ୍ରିୟ ବୃତ୍ତିକ ଶିକ୍ଷା ଦିଅନ୍ତୁ ଏବେ ତାତ ।
ତେଣୁ ନାସ୍ତି କରି ତାଙ୍କୁ କହୁଥିଲି ମୁହିଁ
ବୁଝାଉଥିଲି ତାହାଙ୍କୁ ପୂର୍ବ କଥା କହି ।
ବୋଇଲି ବ୍ରାହ୍ମଣଙ୍କୁ କି ଶୋଭେ କ୍ଷତ୍ରିପଣ
ଶୁଣି ବାଳକେ ତୁମ୍ଭର କରନ୍ତି କାରୁଣ୍ୟ ।
ପିତାଙ୍କୁ କହ ବୋଲି ସେ ପଡ଼ିଲେ ପାଦରେ
କୁହ କେମନ୍ତ ଆସଇ ତୁମ୍ଭ ବିଚାରରେ ।
ଯେତେ ଦିତି ଦେବୀ ତାଙ୍କୁ କହିଲେ ସକଳ
ମନ ମଧ୍ୟେ ଚିନ୍ତା କଲେ ତହୁଁ ତପଶୀଳ ।
ସହଜେ ଏହାଙ୍କ ଜନ୍ମ ଅଟଇ ରାକ୍ଷସ
ବେଦ ବିଦ୍ୟା କର୍ମ ଧର୍ମ ଅଟେ ଦୁଷ୍ଟଙ୍କୁ ବିଷ ।

ଯାର ଯେଉଁ ଅଂଶ ଜନ୍ମ ତାର ସେହି ଗୁଣ
ନଏ ଅନ୍ୟଥା କରିବ ଶାସ୍ତ୍ରର ପ୍ରମାଣ ।
ଏମନ୍ତ ବଚନ ତହୁଁ ବୋଲନ୍ତି ସେ ମୁନି
କ୍ଷତ୍ରୀ ବୃତ୍ତି ଆଚରିବେ ନିଷ୍ଟେ ଏହୁ ବେନି ।
ତୋର ମୋର ନାସ୍ତିକଲେ କି ହେବ ସେକଥା
ଯାହା ଭିଆଣ କରିଛି ବିଧାତା ଦେବତା ।
ଆଗହୁଁ ଜାଣିଲି ମୁହିଁ ଏହାଙ୍କ ଚରିତ
ବେଦବିଦ୍ୟାରେ ନ ଥାଏ ସଦା ଯାଙ୍କ ଚିତ୍ତ ।
ଯେତେ କଷ୍ଟ ପଢ଼ାଇଲେ କେଭେ ନ ପଢ଼ିଲେ
ଯାହାବା ପଢ଼ିଲେ ତାହା ବେଗ ପାଶୋରିଲେ
ତୋହର ଭୟରୁ ତାହାଙ୍କୁ କିଛି ନ ବୋଲଇ
ମାଏଗୋବୋଲିଲେଜାଣ ତୁମୋତେକ୍ରୋଧହୋଇ ।
ବ୍ରାହ୍ମଣର ବେଶ ଛାଡ଼ି କ୍ଷତ୍ରୀ ବେଶ ହେଲେ
ଯେତେ ବୁଝାଇଲେ ଯାହା କେଭେ ନ ବୁଝିଲେ
ମୋହର କଥା ଏମାନେ କେଭେ ନ ମାନିବେ
ତୁହି ବୁଝାଇଛୁ ଅବା କିଛି ବୁଝିଥିବେ ।
ଦିତି ବୋଇଲେ ନିର୍ଭୟା ଯଦ୍ୟପି ତୁମ୍ଭକୁ
ମୋତେ ଡରିବେ ଅଇଲ ତୁମ୍ଭର ମନକୁ ।
ବେଦ ବିଦ୍ୟାରେ ତ ଏହୁ ନ ହୋଇଲେ ତୋଷ
ଯେତେକ ନିନ୍ଦା କଲେଣି ତା କହିବ କିସ ।
ମନଭରସା ବୋଇଲେ ଏ କଥା ରହିଥିବ
କୌଣସି ଗୁଣରୁ ଗୁଣେ କିଛି ନ ହୋଇବ ।
କ୍ଷତ୍ରୀବିଦ୍ୟା ଶିଖିବାକୁ ଯେବେ ମନ ଅଛି
ଶିଖନ୍ତୁ ସେ ବିଦ୍ୟା ତାଙ୍କୁ ଦିଅ ମୁଁ କହୁଛି ।
କାଶ୍ୟପ ବୋଇଲେ କିସ କହିବି ଆବର
ପୂର୍ବେ କହୁଅଛି ଯାହା ମନେଥିବ ତୋର ।
ତୁ ଯେ ବୋଲୁଥାଇ ପୁତ୍ର ନ କଲି ମୁଁ ଜାତ
ତୋ ଗର୍ଭରୁ ଯେ ଜନ୍ମନ୍ତି ହୁଅନ୍ତି ଏମନ୍ତ ।
ସହଜେ କ୍ଷତ୍ରିୟ ବୃତ୍ତି ସମସ୍ତେ କରନ୍ତି
ଦେବତା ମନୁଷ୍ୟ ଆଦି ଯେତେକ ଅଛନ୍ତି ।
କ୍ଷତ୍ରୀ ଆଚରଣ କରି ପାଳନ୍ତି ସେ ଧର୍ମ
ଏ ବେନି ସେ ବୃତ୍ତି କଲେ କରିବେ ଅକର୍ମ ।
ସାଧୁଲୋକଙ୍କ ସଙ୍ଗରେ କରୁଥିବେ କଳି
ତୁହି ପଛେ ନିନ୍ଦା ମୋତେ ନ କରିବୁ ବାଳୀ
ତୁହି ଯେବେ ବୋଲୁଅଛୁ ଦେବି କ୍ଷତ୍ରୀଧର୍ମ
ତୋହର ଦୋଷଟି ଏକା କଲେ ମନ୍ଦକର୍ମ ।

ଦିତି ବୋଇଲେ ସ୍ୱାମୀ ହେ କି କରିବା ଆଜ
ନିରନ୍ତର ମୋର ସଙ୍ଗେ ଲାଗିଲେକ ଏହୁ ।
କାହିଁପାଇଁ ଦୁଷ୍ଟପଣ କରିବେ କୁମର
କ୍ଷତ୍ରିପଣ କରି କର୍ମ ପାଳିବେ ତାଙ୍କର ।
ମୁନି ବୋଲନ୍ତି କରନ୍ତୁ ସେହୁ କ୍ଷତ୍ରିପଣ
ବିଷ୍ଣୁ ଦ୍ରୋହୀ ହୋଇବେ ଯଦି ବେନିଜଣ
ସାଧୁମାନଙ୍କୁ ତାଡ଼ନା ଯଦି ନ କରିବେ
ଦେବତା ବ୍ରାହ୍ମଣ ଋଷିମାନଙ୍କୁ ମାନିବେ
ତା ହୋଇଲେ ସେହି ବିଦ୍ୟା ଦେବା ଅନୁଚିତ
ପୃଥ୍ୱୀକି କରିବେ ସେ ରକ୍ତରେ ରଞ୍ଜିତ ।
ଯଦି ବିଷ୍ଣୁ ଭକ୍ତ ହେବେ ନ ବହିବେ ମାୟା
ନିଷ୍ଠୁର ହୃଦୟ ହୋଇ କରୁଥିବେ ଦୟା ।
ଏମନ୍ତ ହୋଇଲେ ଭଲ ବୋଲୁଥିବେ ଜନେ
ତୋତେ ମୋତେ ସାଧୁବାଦ ଦେବେ ତ୍ରିଭୁବନେ
ଯେଉଁ ନାରାୟଣ ଛନ୍ତି ଜଗତାଧିକାରୀ
ସେ ନାଭିକମଳୁ ବ୍ରହ୍ମା ଛନ୍ତି ଅବତରି ।
ସର୍ବଦେବତା ଅଟନ୍ତି ଯାହାଙ୍କର ଲୋମ
ତାହାଙ୍କୁ ଯଦ୍ୟପି ଏହୁ ନ କରିବେ ତମ ।
ତାଙ୍କୁ ପୂଜା କରି ରୁଦ୍ରଦେବଙ୍କୁ ଭଜନ୍ତୁ ।
ଦୁଇଦେବଙ୍କୁ ଏକତ୍ର ମନେ ବିଚାରନ୍ତୁ ।
ତାଙ୍କୁ ମାନ୍ୟକରି ରୁଦ୍ର କରୁଥାନ୍ତି ପୂଜା
ତେବେ ନିର୍ଭୟେ ମର୍ତ୍ତ୍ୟରେ ହୋଇଥିବେ ରାଜା
ଏହା ନ କରି ଯଦ୍ୟପି ସଂସାର ନାଶିବେ
ତେବେ ଅବଶ୍ୟ କୁଳକୁ ଲାଜ କରାଇବେ ।
ତୋତେ ନିନ୍ଦା କରି ଲୋକେ କହିବେଗୋ ଭଲେ
ଦିତିଠାରୁ ଯେ ଜନ୍ମିଲେ ସେହୁ ଦୁଷ୍ଟ ହେଲେ
ଏକଥା କହି ପୁତ୍ରଙ୍କୁ କରି ନିଆରଣ
କରନ୍ତୁ କ୍ଷତ୍ରିୟ ବୃତ୍ତି ଦେବା ଅସ୍ତ୍ରଗଣ ।
ଦିତି ବୋଇଲେ ସମସ୍ତ କହିବି ବୁଝାଇ
ତୁମ୍ଭେ ତ କରୁଛ ଶୁଣୁ ନାହାନ୍ତି କି ସେହି ।
ବଜ୍ର ପ୍ରାୟ କରିଅଛ ପୁତ୍ରଙ୍କର ଅଙ୍ଗ
ଯୁଦ୍ଧରେ ପଶିବେ ଅସ୍ତ୍ର ହୋଇଯିବ ଭଙ୍ଗ ।
ପୁତ୍ରଙ୍କୁ ଅନାଇ ଋଷି ବୋଲନ୍ତି ବଚନ
କ୍ଷତ୍ରିୟ ବୃତ୍ତିରେ ଶ୍ରଦ୍ଧା ହେଲା କି ନନ୍ଦନ ।
ଋଷିଙ୍କ ବଚନ ଶୁଣି ସେ ଦୈତ୍ୟ ହିରଣ୍ୟ
କର ଯୋଡ଼ିଣ ପିତାଙ୍କୁ କରଇ କାର୍ପଣ୍ୟ ।

ହେ ପିତା ଷର୍ଦ୍ଦିପ୍ରବୃତ୍ତି ହଅ ବେଗେ କହ
ଧର୍ମମାର୍ଗେ ଥିବୁ ହିଂସା ନ କରିବୁ କାହିଁ ।
ତହିଁକ ଶପଥା ମୋର ବଳିଛୁ ବହୁତ
ନ କର ନିଘାତ ଆଜ ମୋହର ଶପଥ ।
ମୁନି ବୋଇଲେ ସେହବୁ ଏକା ନାରାୟଣ
ସଂସାରରେ ନ କରିବୁ କେବେ ଦୁଷ୍ଟପଣ ।
ଗୋବ୍ରାହ୍ମଣ ଦେବତାଙ୍କୁ ସଦା ମାନୁଥିବୁ
ଚିତ୍ତେ ଦୟାବନ୍ତ ସଦା ମନ ତୋଷୁଥିବୁ ।
ହିରଣ୍ୟ ପୃଚ୍ଛାକରଇ କହିବା ଗୋସାଇଁ
ଦୁଇ ଦେବତାରୁ ଶ୍ରେଷ୍ଠ କଏ ସେ ଅଟଇ ।
ଶୁଣି କାଶ୍ୟପ କହନ୍ତି ଶ୍ରେଷ୍ଠ ନାରାୟଣ
ହୃଦୟେ ଧ୍ୟାନ କରନ୍ତି ଯାହାରେ ଯୋଗୀଗଣ ।
ତାହାଙ୍କୁ ଦୃଢ଼େ ଭଜିଲେ ନିଜପୁର ଦିଅନ୍ତି
ତା ନୋହିଲେ ଚରାଚର କରିଣ ରଖନ୍ତି ।
ତାଙ୍କଠାରୁ ବର ଅତି କଷ୍ଟରେ ମିଳଇ
ପାଇଲେ ଅତୁଟ ହୋଇ ସେ ପ୍ରାଣୀ ହରଇ
ରୁଦ୍ରଙ୍କୁ ଯାହା ମାଗିବ ତକ୍ଷଣେ ତା ଦିଅନ୍ତି
ମାତ୍ର ଦୁଷ୍ଟପଣ କଲେ ତରସ୍ତୁ ନୁହନ୍ତି ।
କେବଳ ଅଳ୍ପକେ ନସନ୍ତ ଦେଇଥାନ୍ତି ବର
ମାତ୍ରକ ସେ କଥା ବାକୁ ନୁହଇଁ ତର ।
ସବୁ ଛାଡ଼ିଦେଇ ଭୂମି ବିଷ୍ଣୁ ଭଜୁଥିଲେ
ଜନ୍ମପୁରେ ଭୟ ନାହିଁ ତୋତେ ମାତ୍ର ତନେ ।
ହିରଣ୍ୟ ବୋଇଲା କାହେ ମୁହିଁ ନ ଭଜିବି
ମୋହର ସୁଖରେ ମୁହିଁ ଗୃହେ ରହିଥିବି ।
କାହାର ସଙ୍ଗରେ ଯୁଦ୍ଧି ନ କରିବ କଳି
ଅଦୋଷେ କ୍ଷମା ମାରିବେ ମୋତେ ବନମାଳୀ
କାଶ୍ୟପ ବୋଇଲେ ଏହା ଅତିଶୟ ଭଲ
ଏ ଭାବ ତୋଟିକ କେହି ନୁହେ ସମତୁଲ ।
ଭଲମନ୍ଦ ପାପପୁଣ୍ୟ ଯେଉଁ ଲୋକ ନାହିଁ
ଅଦୋଷରେ ଧର୍ମ ତାକୁ ମାରିବ ବା କାହିଁ ।
ମୁଁ ଏବେ ଧର୍ମର କଥା କହିଲଇଁ ଯେତେ
ମାତା ମଧ୍ୟ କହିଛନ୍ତି ଧରିଥିବୁ ଚିତ୍ତେ ।
କହନ୍ତି ଶ୍ରୀ ଶୁକମୁନି ଶୁଣ ନୃପବର
ପାଖେ ବସାଇ ପୁତ୍ରଙ୍କୁ ମୁନି ଅତଃପର ।
କହନ୍ତି ମନ୍ତ୍ର ଯନ୍ତ୍ରାଦି ଧନୁର୍ବିଦ୍ୟାମାନ
ଯେଉଁ ମନ୍ତ୍ରେ ଯେଉଁ ଶର ଚଳିବା ବିଧାନ ।

ପ୍ରହରକେ ଜାଣିଲେ ସେ ଯନ୍ତ୍ରମନ୍ତ୍ର କଳ
ପୂର୍ବବାସନା ଥିବାରୁ ଘଟଇ ସୁଫଳ ।
କାଶ୍ୟପ ଯେବଣ ମନ୍ତ୍ର ପଢ଼ାଇ ଦିଅନ୍ତି
ପଚାରିଲେ ସବୁକଥା ଲେଉଟି କହନ୍ତି ।
ବେଦଯେତେ ପଢ଼ାଇଲେ ସବୁ ପାଶୋରିଲେ
ଧନୁର୍ବିଦ୍ୟା ଯନ୍ତ୍ରମନ୍ତ୍ରେ ପାରଙ୍ଗମ ହେଲେ ।
ବେଦ ମନେ ରଖିବାକୁ କାହିଁ ପୁଣ୍ୟବଳ
ଷଡ଼ ବୃତ୍ତି କଲେ ସିନା ସିଂବ ସମଥାଳ ।
ବ୍ରହ୍ମାର ବିଷ୍ଣୁରୁଦ୍ରର ଦେବତାରମାନ
ନାଗପାଶ ରୁଦ୍ରଶର ପାଶୁପତ ବାଣ ।
କାଳଗଦା ଲୌହଗଦା ହେମଗଦା ଦେଲେ
ବ୍ରହ୍ମଶିରୀ ବ୍ରହ୍ମଚକ୍ର ମୋହନା ଅର୍ପିଲେ ।
ବଜ୍ରପ୍ରା ଶକତ ଅସ୍ତ୍ର ଆବର ଗର୍ଜନା
ମେଘ ପବନାର ଅସ୍ତ୍ର ଅଟେ ତନ୍ତ୍ରମୁନା ।
ଅଗ୍ନିଅସ୍ତ୍ର ବରୁଣାସ୍ତ୍ର ଅଗ୍ନି ମୁଦ୍ଗର
ନାରାଚକ କୋଟି କୋଟି ବାହାରଇ ଶର ।
ସକଳ ଅସ୍ତ୍ରର ବିଦ୍ୟା ପୁତ୍ରଙ୍କୁ କହିଲେ
ଆନନ୍ଦରେ ଦୁଇଭାଇ ସନ୍ତୋଷେ ଘେନିଲେ ।
ନାରାୟଣ ଶିବମନ୍ତ୍ର କହିଲେ କର୍ଣ୍ଣରେ
ଯୁଦ୍ଧରେଯେତେକ ଅସ୍ତ୍ର ଦେଲେ ସନ୍ତୋଷରେ
ଖଡ଼ଗ କୁଠାର କୁନ୍ତ ଦେଲେ ମୁନିବର
ବଜ୍ରପ୍ରା କର୍ଣ୍ଣିକଣ୍ଟାଗ ସମର୍ପିଲେ କର ।
ବୋଇଲେ ବ୍ରହ୍ମାଣ୍ଡେ କେହି ନ ହୁଅନ୍ତି ସରି
ଏହିରୂପେ ବର ତାଙ୍କୁ ଦେଲେ ତପସ୍ୱୀ ।
ସମସ୍ତ ଅସ୍ତ୍ରାଦି ପାଇ ତୁଷ୍ଟ ବେନିସୁତ
ପିତାଙ୍କ ଚରଣତଳେ କଲେ ପ୍ରଣିପାତ ।
ସନ୍ତୋଷେ କଲ୍ୟାଣ କଲେ ତାଙ୍କୁ ମହାମୁନି
ଦେଖି ଆନନ୍ଦିତା ହେଲେ ତାହାଙ୍କ ଜନନୀ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ନୃପବର
ଅଜେୟ ହୋଇଲେ ବେନି କଶ୍ୟପକୁମର ।
ଧନୁ ଗଦାକୁ ସାଧନ ନିତ୍ୟ କଲେ ବେନି
କାମରୂପୀ ହୋଇଯାନ୍ତି ରୂପଦର୍ପ ଘେନି ।
ଅନର୍ଗଳ ଘୋଡ଼ାରକୁ ବାନ୍ଧିଲେ ପୟର
ଭୂଜ ଦେଖେ ଖର ନେତ ଉଜେ ପରହର
ଭ୍ରୂକୁଟି ବୈଜୟନ୍ତୀର ମାଳାକୁ ପିନ୍ଧନ୍ତି
ଅଗ୍ନିତେଜପ୍ରାୟ ବେନି ଦଇତ ଦିଶନ୍ତି ।

ଶିରରେ ମଣିମୁକୁଟ ଦିଶେ ଶୋଭାବନ
ଉତ୍ତପ୍ତସ୍ୱର୍ଣ୍ଣସ୍ତ୍ରେ ହୃଦେ ପଇତା ସୁବର୍ଣ୍ଣ ।
ଏମନେକ ସ୍ୱର୍ଗପୁରକୁ ଗଲେ ବେନିଭାଇ
ପର୍ବତ ସମାନ ଗଦା କାନ୍ଧରେ ପକାଇ ।
ମାଲ ବେଶରେ ଚଳନ୍ତି ସେହୁ ବେନି ବୀର
ଦେଖନ୍ତି ସେ ଗତାଗତ ହୋନ୍ତି ବିଦ୍ୟାଧର ।
ତାଙ୍କ ଉପରେ ଯତନେ ଧାବୋଡ଼ନ୍ତି ଯାଇ
ନ ସମ୍ଭାଳି ସେ ଗଙ୍ଗର ଲେଉଟିଯାନ୍ତି ମହୀ ।
ଉଠିକରି ବର୍ଣ୍ଣି ବର୍ଣ୍ଣି କିଛି ନ ବୋଲନ୍ତି
କାଶ୍ୟପଙ୍କ ପୁତ୍ର ବୋଲି ଭୀତ ହୋଇଯାନ୍ତି ।
ସୁଧର୍ମା ସଭାର ତଳେ ମିଳିଲେ ସେ ଯାଇ
ଦେଖିଲେ ଦେବତାମାନେ ବସିଛନ୍ତି ତହିଁ ।
କରେ ଘେନି ଗଦାବର ଉପରକୁ ଗଲେ
ଦେବତାଙ୍କୁ ବର୍ଣ୍ଣି ବର୍ଣ୍ଣି ଦଣ୍ଡେ ଭଗ୍ନ ହେଲେ ।
ତହିଁ ତକ୍ଷଣେ ସେଠାରୁ ଗଲେ ବେନିଭାଇ
ଗଦାବର କନ୍ଧେ ରଖି ଆଗପଛ ହୋଇ ।
ଦେବତାଏ ଦେଖି କଥା ନ କହିଲେ ଯହୁଁ
ତେଣୁକରି ବାହୁଡ଼ିଣ ଅଇଲେକ ତହୁଁ ।
କେହି ତାହାଙ୍କୁ କଥାଏ ନ ବୋଇଲେ କିଛି
ସ୍ୱର୍ଗପୁରକୁ ଗମନ୍ତି ତହୁଁ ମୁନିବରି ।
ପଛରେ ଦେବେ କରନ୍ତି ତାଙ୍କର ବିଚାର
କାଶ୍ୟପ କୁଳରେ ଜାତ ଏ ବେନି ଅସୁର
ବର ଦେଇ ଶରୀରକୁ ବଜ୍ରସମ କଲେ
ଅସ୍ତ୍ର ବିଦ୍ୟା ସମସ୍ତ ତାଙ୍କୁ ଶିକ୍ଷା ଦେଲେ ।
ନଷ୍ଟେ ସଂସାରରେ ଏହୁ ଲଗାଇଲେ ଦ୍ୱନ୍ଦ୍ୱ
ଦୁଷ୍ଟ ପ୍ରକୃତି ଅସୁର ଜାତି ବଡ଼ ମନ୍ଦ ।
ଆମ୍ଭମାନଙ୍କୁ ଦେଖିଣ ନ କଲେ ସମ୍ମାନ
ଉର୍ଦ୍ଧ ହୋଇ ବର୍ଣ୍ଣିଲେ ଯେ ତରଳି ନୟନ ।
ଆଜହୁଁ ସ୍ୱାଙ୍କର ବୁଦ୍ଧି ହେଲଣି ଏମନ୍ତ
ଦୁଷ୍ଟ ଦୁଇ ତ ଏ ନଷ୍ଟ ନାଶିବେ ଜଗତ ।
ଏହି ରୂପରେ ଭାଳେଣି କଲେ ସର୍ବସୁର
ଏଥୁଅନ୍ତେ ବେନିଙ୍କର ଶୁଣ ସମାଚାର ।
ଇନ୍ଦ୍ରଭୁବନରେ ପଶି ବ୍ରହ୍ମଲୋକେ ଗଲେ
ସକଳ ଭୂମି ଭ୍ରମିଣ ବାହୁଡ଼ି ଅଇଲେ ।
ନିଜଭୁବନ ପଥରେ କରିଲେ ଗମନ
ପ୍ରବେଶ ହୋଇଲେ ଆସି ନିଜ ନିକେତନ ।

ପିତାଙ୍କୁ ଦେଖି ପ୍ରଥମେ ନମସ୍କାର କଲେ
କେଉଁଣେ ଯାଇଥିଲ ବୋଲି ମୁନି ପଚାରିଲେ ।
ହିରଣ୍ୟ ବୋଇଲା ସ୍ୱର୍ଗ ଭୂମି ଯାଇଥିଲୁଁ
ବ୍ରହ୍ମଲୋକଠାରୁ ପୁଣି ବାହୁଡ଼ି ଅଇଲୁଁ ।
ତାହା ଶୁଣିଣ କାଶ୍ୟପ ହୋଇଲେ ମଉନ
ତହୁଁ ମାତା ପାଶେ ଯାଇ ଦେଲେ ଦରଶନ
ଜନନୀଙ୍କୁ ଦେଖି ଶିରେ କର ନିବେଶନ୍ତି
କଲ୍ୟାଣ କରି ଜନନୀ ତାଙ୍କୁ ପଚାରନ୍ତି ।
ଆଜ ଏତେକ ଉଛୁର କାହିଁ ଟଳି କରିର
ଲେଉଡ଼ି ଲେଉଡ଼ି ନ ପାଇଲି ପଠାଇ କିଙ୍କର ।
ହିରଣ୍ୟ ବୋଇଲା ମାତା ଭୂମି ଯାଇଥିଲୁ
ସୁଧର୍ମା ସଭାରେ ସୁରମାନଙ୍କୁ ଦେଖିଲୁଁ ।
ସେଠାବରୁ ବାହୁଡ଼ିଣ ଆସିଅଛୁ ମାତଃ
ଦିତି ବୋଇଲେ ଧନ୍ୟ ତ କରିନାହଁ ସୁତ ।
ମାତାଙ୍କ ବଚନ ଶୁଣି ବୋଲନ୍ତି ଦଇତେ
ସବୁବେଳେ ବାହ୍ମ କଥା ଦିଶୁଥାଇ ତୋତେ ।
ପନ୍ଥ ପଥେ ଗଲୁ ପଥେ ଅଇଲୁ ତ ଆମ୍ଭେ
କଳିଗୋଳ କରିବୁ ତୋ ଆଜ କାହା ସଙ୍ଗେ
ତାହା ଶୁଣିଣ ଜନନୀ ହେଲେ ନିରୁତ୍ତର
କହିଛନ୍ତି ଶୁକମୁନି ଶୁଣ ନୃପବର ।
କହୁଁ କହୁଁ ପାଞ୍ଚବର୍ଷ ଆସି ବହିଗଲା
ହିରଣ୍ୟ ହିରଣ୍ୟାକ୍ଷର ମହାତେଜ ହେଲା ।
ମେରୁ ଉପାଡ଼ିବା ପାଇଁ ବିଚାରନ୍ତି ମନ
ହୁଙ୍କାରେଣ ଉପରକୁ ଯେପନ୍ତି ଗଗନ ।
ଏକଦିନେ ବେନି ଭାଇ ବିଚାରନ୍ତି ମନ
ଚାଲ ଦେଖିଯିବା ମର୍ତ୍ତ୍ୟ ଭୁବନ କେସନ ।
ହିରଣ୍ୟାକ୍ଷ ବୋଲେ ପିତାମାତାଙ୍କୁ କହିବା
ଉଛୁର ହେଲେ ବୋଲିଣ ଆଉ ନ ପାଇବା
ଏକଥା ଭାବି ତାଙ୍କର ସମୀପେ ମିଳନ୍ତି
ମର୍ତ୍ତ୍ୟ ଭୁବନକୁ ଆଜ ଯାଉଛୁଁ ବୋଲନ୍ତି ।
ତାହା ଶୁଣି ମୁନିବର ସମ୍ମତ କଲେ
ମାତାଙ୍କ ନିକଟେ ପୁଣି ପ୍ରବେଶ ହୋଇଲେ ।
ବୋଇଲେ ଜନନୀ ଆଜ ଯିବୁ ମର୍ତ୍ତ୍ୟପୁର
ଆଜ୍ଞାଦିଅ ଦେଖିବାକୁ ଶରଧା ଆମ୍ଭର ।
ମାତା ଏ ବୋଇଲେ ଯାଅ ଦେଖିଆସ ଯାଇ
ବେଗେ ଆସିବ ବିଳମ୍ବ ଯେସନେ ନୁହଇ ।

ମା ତାଙ୍କ ଆଦେଶେ ହସମେ ଚାଲେ ବେନି ବୀର
ହସ୍ତରେ ଧରିଅଛନ୍ତି ବଜ୍ର ଗଦାବର ।
ନିଜ ଶୂନ୍ୟଭୁବନରୁ ସ୍ଥଳ ପୈ ଆସନ୍ତି
ପାଦଗାମୀ ହୋଇ ମର୍ତ୍ତ୍ୟପୁରରେ ମିଳନ୍ତି ।
ଦେଖନ୍ତି ଗିରି ଅରଣ୍ୟ ନଦ ନଦୀ ଲତା
ଅତି ଆନନ୍ଦିତ ହେଲେ ସେହି ବେନି ଭ୍ରାତା ।
ବୋଲନ୍ତି ବଡ଼ାଇ ସୁଖ ଲାଗୁଛି ରେ ଭାଇ
ଏ ପୁରକୁ ଦେଖି ସ୍ୱର୍ଗ ହିଁ ଏ ପାଶୋରାଇ ।
ହିରଣ୍ୟାକ୍ଷ ବୋଲେ ପ୍ରାଣୀ ନ ଦିଶନ୍ତି କେହି
ହିରଣ୍ୟ ବୋଲେ ଅରଣ୍ୟେ ଦେଖିବୁ ତୁ କାହିଁ
ଗ୍ରାମମାନଙ୍କରେ ଯିବା ଛନ୍ତି ଜନ ପ୍ରାଣୀ
ଏକ୍ଷଣି ସବୁ ଦେଖିବୁ ଭାଇ ଗୁଣମଣି ।
ଏମନ୍ତ କହି ଚଳିଲେ ତହୁଁ ବେନି ଭାଇ
ଶାଇଳ ଦେଶ ନିକଟେ ମିଳିଲେକ ଯାଇ ।
ଦେଖିଲେ ନଗର ତହିଁ ଦିଶେ ତୋଷବନ
ଧ୍ୱଜ ପତାକା ସକଳ ଉଡ଼ିଇ ଗଗନ ।
ସିନ୍ଧୁଘୋଷ ପରିପୂର୍ଣ୍ଣ ଶୁଭଇ ଚହଳ
ବାଦ୍ୟ ଢଙ୍କ ଭେରୀ ନାଦ ହେଉଛି କେବଳ ।
ଦେଖିଣ ସନ୍ତୋଷ ଚିତ୍ତ ସେ ଦୁହେଁ ଅସୁର
ବୋଇଲା ଦେଖରେ ଭାଇ ଆଗରେ ନଗର ।
ଆସ ଏବେ ନଗରର ଭିତରେ ପଶିବା
କେଉଣ ଲୋକ ଅଛନ୍ତି ତାହାଙ୍କୁ ଦେଖିବା ।
ଏତେ ବୋଲି ବେନି ଭାଇ କରନ୍ତେ ଗମନ
ପ୍ରବେଶ ହୋଇଲେ ଯାଇ ନଗ୍ର ମଧ୍ୟସ୍ଥାନ ।
ଦେଖିଲେ ଯେବେ ସେ ସ୍ଥାନେ ଅଟନ୍ତି ଅସୁର
ପର୍ବତ ସମାନ ଅଟେ ତାଙ୍କ କଳେବର ।
ପଲପଲ ହୋଇ ଦୈତ୍ୟ ତହିଁ ଛନ୍ତି ରହି
ହିରଣ୍ୟ ହିରଣ୍ୟାକ୍ଷ ଯେ ମିଳିଲେକ ତହିଁ ।
ଦେଖି ଦନୁଜ ବୁହାନ୍ତି ତାଙ୍କୁ ବନ୍ଦନ କରି
ପୁଛନ୍ତି କାହୁଁ ଅଇଲ ତୁମ୍ଭେ ଗଦା ଧରି ।
ରାକ୍ଷସ ସ୍ୱରୂପେ ଦିଶୁଛ କୁମର ଏ ତନୁ
କଉଣ ଦିଗକୁ ଅଛ କରି ହେଁ ଭାନୁ ।
କାହାର କୁଳେ ଜନମ ମାତା ପିତା କହ
କ୍ଷତ୍ରୀ ବୃତ୍ତି ଆଚରଣ ଯଜ୍ଞସୂତ୍ର ଦିହ ।
ହିରଣ୍ୟ ବୋଇଲା ଆମ୍ଭେ କାଶ୍ୟପଙ୍କ ସୁତ
ଦିତି ଠାକୁରାଣୀ ଗର୍ଭେ ହୋଇଅଛୁ ଜାତ ।

ସ୍ୱର୍ଗରୁ ଅଇଲୁଁ ମର୍ତ୍ତ୍ୟ ଦେଖିବାର ପାଇଁ
ଏ ମୋହର ସାନଭାଇ ସଙ୍ଗରେ ଅଛଇ ।
ଶୁଣିଣ ଦଇତେ ବଡ଼ ଆନନ୍ଦ ହୋଇଲେ
ଆମ୍ଭେ ମଧ କାଶ୍ୟପଙ୍କ କୁଳ ସେ ବୋଇଲେ
ବଳିର ପୁତ୍ର ଅମୃତ ଦଇତର ନାଥ
ସେ ଦୁହିଁଙ୍କୁ ଗଉରବ କରିଲା ବହୁତ ।
ଦୈତ୍ୟ କଙ୍କର ଦୁହିଙ୍କ ପାଦ ଧୋଇଦେଲେ
ବସିବାକୁ ଦିବ୍ୟାସନ ଆଣି ଯୋଗାଇଲେ ।
ବସ ବସ କହୁଅଛୁ ପୂର୍ବର ଯେ କଥା
ଯେ ହା ଯାହା କରିଛନ୍ତି ସକଳ ଦେବତା ।
କହଇ ଅମୃତ ଶୁଣ ବେନଭାଇ ତୁମ୍ଭେ
କାଶ୍ୟପ ଗୋତ୍ର ଯେମନ୍ତେ ଆତେ କହୁ ଆମ୍ଭେ
ସମୁଦ୍ର ମନ୍ଥନ କଲେ ଯେଉଁ ଦେବାସୁର
ସେମାନେ ସବେ କାଶ୍ୟପ ଔରସ କୁମର ।
ଆଦିତ୍ୟ ଦେବୀଙ୍କ ଗର୍ଭେ ଦେବତା ଏ ଜାତ
ଦିତିଙ୍କ ଗର୍ଭରୁ ଆମ୍ଭେ ଅସୁର ସମ୍ଭୂତ ।
ଏକ ବୁଦ୍ଧି ହୋଇ ସର୍ବେ ମନ୍ଥନ କରିଲେ
ରତ୍ନ ଜାତ ହେଲା ତହୁଁ ଦେବତା ଏ ନେଲେ
ଅମୃତ ଓ ସୁରା ମଧ ମନ୍ଥନରୁ ମିଳେ
ଭୋଜନ କରି ବସିଲେ ଏକତ୍ରେ ସକଳେ ।
ଅସୁରମାନଙ୍କୁ ମଦ ପରଷିଣ ଗଲେ
ଦେବତାମାନେ ଅମୃତ ଖାଇ ତୋଷ ହେଲେ ।
ତହିଁପାଇଁ ଗୋଳମାଳ କଲେ ଦୈତ୍ୟଗଣ
ଦେବତାମାନେ ବଧିଲେ ସଙ୍ଗେ କରି ରଣ ।
ଆପଣେ କୃଷ୍ଣ ନାରାୟଣ କରେ ଚକ୍ର ଧରି
ଦୈତ୍ୟବଳ ସମସ୍ତଙ୍କୁ ପକାଇଲା ମାରି ।
ଆବର ପ୍ରତିଜ୍ଞା କଲା ସେହି ଚକ୍ରପାଣି
ସ୍ୱର୍ଗକୁ ଅଇଲେ କାଟି ପକାଇବ ହାଣି ।
ତାର ପ୍ରତିଜ୍ଞାରେ ଆମ୍ଭେ ମର୍ତ୍ତ୍ୟରେ ରହିଲୁ
ଭୟ କରି ଆଉ ସ୍ୱର୍ଗପୁରକୁ ନ ଗଲୁଁ ।
ଯିବା ଆସିବା କୌଣସି ଦିନେ ଆଉ ନାହିଁ
ତାହାର ଭୟେ ଏଠାରେ ଅଛୁଁ ଲୁଚି ହୋଇ ।
ଯେଉଁ ଦେଉଁମାନଙ୍କ ସେ କଲା ଧନଭ୍ରଷ୍ଟ
ସେହିମାନଙ୍କର ଆମ୍ଭେ ହେଉ ପୁତ୍ର ନାତି ।
ତୁମ୍ଭଙ୍କୁ ଦେଖିଲୁ ଆଜ ଆମ୍ଭ ବଡ଼ ପୁଣ୍ୟ
ତୁମ୍ଭେ ବେନି ଆମ୍ଭ ପିତାମହଙ୍କ ନନ୍ଦନ ।

ପିତାମହଙ୍କ ବଇରୀ ପାରିବ କି ମାରି
ସେ ନାରାୟଣ ଦେବତା ସଙ୍ଗେ ଯୁଦ୍ଧ କରି ।
ଯେଉଁ ଜନକୁ ମାରିଛି ଆମ୍ଭର ସେ ପିତା
ତୁମ୍ଭ ବେନି ଭାଇଙ୍କର ସେହୁ ଜ୍ୟେଷ୍ଠଭ୍ରାତା ।
ତେଣୁକରି ତୁମ୍ଭେ ହେଲ ଆମ୍ଭ ପିତୃସମ
ସେହୁ ଆଗେ ହୋଇଥିଲେ ଏବେ ତୁମ୍ଭ ଜନ୍ମ
ପୂର୍ବଙ୍କର ବଇରୀକୁ ପାରିବକି ମାରି
ଏ ଯେତେ ଦେବତା ଦେଖ ଆମ୍ଭର ବଇରୀ ।
ପିତାଙ୍କ ସିଦ୍ଧ ବଚନ ମାଗି ଘେନ ବର
ଜିଣି ନ ପାରିବେ ଯେତେ ଦେବାସୁର ନର
ତା ନୋହିଲେ ନାରାୟଣ ତୁମ୍ଭଙ୍କୁ ମାରିବ
କାଶ୍ୟପ ମହାମୁନି ଯେ ରଖି ନ ପାରିବ ।
ବଳିଷ୍ଠ ଦଇତ ଜଣେ ନ ରଖିବ କାହିଁ
ନିୟମ କରିଛି ସେହୁ ତାର ଚକ୍ର ଥୁଇଁ ।
କୁଳରେ ଜଣେ ପାରିଲେ ପିତୃବୈରୀ ମାରି
ତୁମ୍ଭେ ବେନି ସ୍ୱଭାବେ ତ ଅଛ ହଳକାରୀ ।
ଆମ୍ଭ ଅସୁର କୁଳକୁ ହରି କରେ ନାଶ
ତାର ବଇରୀ ଅଟଇ ସେହୁ ପୀତବାସ ।
ତୁମ୍ଭେ ବେନି ଭାଇ ଅଛ କଶ୍ୟପଙ୍କ ସୁତ
ପିତାଠାରୁ ବରଘେନ ଦେବେ କରି ହିତ ।
ତୁମ୍ଭେମାନେ ତାହାଙ୍କର କୁଳର ନନ୍ଦନ
ଯାହା ମାଗିବ ତା ଦେବେ ନିଶ୍ଚେ ତପୋଧନ
ପୂର୍ବରେ ସେମାନେ କିଛି ମାଗି ନ ପାରିଲେ
ଏମନ୍ତ ହୋଇବ ବୋଲି ସେ କି ଜାଣିଥିଲେ ।
କାଳେ ପୁଣି କଥା ଆସି ହେଲା ଏତେ ସରି
ଦେବତା ଏ ଅସୁରଙ୍କୁ ପକାଇଲେ ମାରି ।
ଏଜରୁ ଜନ୍ମ ଏକାଧ ଯୋଜନ ଯାପୁନ
ସେ ପୁଣି କରିଲେ ଦେଖ ଜେଉଁ କଥାମାନ ।
ତେଣୁକରି ସ୍ମାରଣ କହୁଛୁ ତୁମ୍ଭଙ୍କୁ
ବିଶ୍ୱାସ ନ କର କେଭେ ସେ ନାରାୟଣଙ୍କୁ ।
ଯାହା କହିଲୁ କେମନ୍ତେ ଘେନିଲ ମନରେ
ଆମ୍ଭ ବୈରୀ ଚକ୍ରଧର ସର୍ବଦା କାଳରେ ।
ସେମାନଙ୍କର ବଚନ ସମସ୍ତ ଶୁଣିଲ
ଅସୁରର ପ୍ରତ୍ୟୁତ୍ତରେ ହିରଣ୍ୟ କହିଲ ।
ତୁମ୍ଭେ ମୋ ଆଗରେ ଯାହା କହିଲ ବିସ୍ତାରି
ମାତା ମୋର କହିଥିଲେ ମୋତେ ସେହିପରି ।

ସବୁ କଥା କହି ମାତା ବହୁ ଶିଆରିଲେ
ଦେବଙ୍କ ସଙ୍ଗରେ ଦ୍ୱନ୍ଦ ନ କର ବୋଇଲେ ।
ନାରାୟଣଙ୍କ ସମ୍ମୁଖରେ କରିବ ଭକତି
ଆବର ଜନକ ମଧ୍ୟ କହିଲେ ଏମନ୍ତ ।
ତେଣୁକରି ଆମ୍ଭେମାନେ ତୁନି ହୋଇଅଛୁ
ମାତା ପିତାଙ୍କ ବଚନ ଲଙ୍ଘି ନ ପାରୁଛୁଁ ।
ପିତା କଶ୍ୟପ ଆମ୍ଭଙ୍କୁ ଦେଇଛନ୍ତି ବର
କହିଛନ୍ତି ଜିଣ ତୁମ୍ଭେ ଆକାଶ ସଂସାର ।
ଆବର ଦେହ ଆମ୍ଭର ବଜ୍ର କରିଛନ୍ତି
ଅସ୍ତ୍ର ନ କାଟିବ ବୋଲି ମାତା କହିଛନ୍ତି ।
ତାଙ୍କ ପ୍ରସାଦେ ମେରୁକୁ ନ ଗଣୁ କଞ୍ଚନ
କିସ ବଳ ବୀର୍ଯ୍ୟ ଧରେ କମଳାର ନାଥ ।
ପୂର୍ବେ ଦଇତମାନେ ଦୁର୍ବଳ ଯେ ଥିଲେ
ଅସ୍ତ୍ର ଭେଦନ୍ତେ ଶରୀରେ ତା ହସ୍ତରେ ମଲେ ।
ତାହାଙ୍କର ପରାଏ ମୁଁ ଦୁର୍ବଳ ନୁହଇ
ଇନ୍ଦ୍ରର ବଜ୍ରକୁ ମୋର ତିଳେ ଭୟ ନାହିଁ ।
ନାରାୟଣର ଚକ୍ରକୁ ନାହିଁ ମୋର ଡର
ଆବର ଅସ୍ତ୍ରମାନେ ତ କଞ୍ଚନ ମାତର ।
ମୁହିଁ ତ ତିନିପୁରରେ କାହାରେ ନ ଡରଇ
କେବଳ ପିତାଙ୍କୁ ମୁହିଁ ଥାଏ ଭୟ ପାଇ ।
ଆବର ମାତାଙ୍କ ପ୍ରତି ରଖେ ଭୟ ଚିତ୍ତ
ସେ ହେତୁ ଗର୍ଭରୁ ମୋତେ କରିଛନ୍ତି ଜାତ ।
ସେ ଦୁହେଁ ତ ମହାଗୁରୁ ନ ଡରିବୁ କାହିଁ
ନୋହିଲେ ତିନି ଜଗତେ କାହାରେ ଭୟନାହିଁ ।
ଏ ମୋହର ସାନଭାଇ ଅଟେ ହଳକାରୀ
ମନେକଲେ ବହିନେବ ଏଡ଼େ ବସୁନ୍ଧରୀ ।
ଆମ୍ଭେ ବେନି ଭାଇ ଦିନେ ସୁଧର୍ମାକୁ ଗଲୁଁ
ଦେବତାମାନେ ଅଛନ୍ତି ସେଠାରେ ଦେଖିଲୁ ।
କାହାରିକୁ ସନମାନ ଆମ୍ଭେ କଲୁ ନାହିଁ
ଦର୍ଶନମାତ୍ରେ ଛୁଡ଼ାହୋଇ ଅଇଲୁ ପଳାଇ ।
ଯୁଦ୍ଧ କରିବାକୁ ଥିଲା ମୋରେ ବଡ଼ ମନ
ମାତା ପିତା ଡରେ ପୁଣି ନୋହିଲା ସେମାନ ।
ଯେତେଣ ଗଲେ ପଚାରନ୍ତି ଆମ୍ଭଙ୍କୁ ସେ ସବୁ
କାହାର ସଙ୍ଗତେ କଳହ କର ନାହିଁ ବାବୁ ।
ଏବେ ଏଠାକୁ ଆସିଛୁଁ ଆମ୍ଭେ ବେନି ଭାଇ
ଗଲେ କାଳ କଥା ଆଗ ପଚାରିବେ ସେହି ।

ଆସିବା କାଳେ କହିଲେ ବେଗରେ ଆସିବ
ବହୁତ ବିଳମ୍ବ କାହିଁ କେବେ ନ କରିବ ।
ମାତା ପିତା ଦୁଇଜଣ ହିନ୍ଦୁଙ୍କୁ ଡରନ୍ତି
ତେଣୁ କରି ଆମ୍ଭେ ଦୁହେଁ ହୋଇଅଛୁ ଶାନ୍ତି ।
ପୂର୍ବରୁତ ପୁତ୍ରମାନେ ହୋଇଛନ୍ତି ହତ
ତେଣୁ କରି ହରିଙ୍କୁ ସେ ଡରନ୍ତି ବହୁତ ।
ତୁମ୍ଭେତ କହିଲ ହରି ଆମ୍ଭର ବଇରୀ
ମାରିବୁଁ ତାହାକୁ ଆମ୍ଭେ ନିଶୋଧନ କରି ।
ଆହୁରି ଗୋଟିଏ କଥା କହୁଅଛୁ ମୁହିଁ
ପିତା ପାଖେ ଥିଲେ ହିନ୍ଦୁ କରିବି ମୁଁ କାହିଁ
ସ୍ୱାଧୀନ ଭାବରେ ଥାଇ ଯାହା ତାହା କଲେ
ତାଙ୍କ ବଚନକୁ ଆଜ ମାନିବା କ ଭଲେ ।
ତେବେ ଯାଇ ହରି ସଙ୍ଗେ ଲଢ଼ାଇବା କିନି
ତା ନୋହି ପାଖରେ ଥିଲେ ଖାଉଥିବା ଗାଳି ।
ଅମୃତ ବୋଇଲ ତୁମ୍ଭେ ମର୍ତ୍ତ୍ୟେ ଆସି ଉଭ
ତୁମ୍ଭେତ ସ୍ୱଭାବେ ମୋର ଖୁଲ୍ଲତାତ ହୁଅ ।
ତୁମ୍ଭର ସଙ୍ଗତରେ ତ ସୈନ୍ୟବଳ ନାହିଁ
ରଥଗଜ ପଦାତିତ ସବୁ ଦେବି ମୁହିଁ ।
ଆସ ଏବେ ମର୍ତ୍ତ୍ୟପୁରରେ ନୃପତି ହୋଇବ
ଯାନ ଲୋକ ପ୍ରାପ୍ତେ କପାଁ ମେଠାବରେ ଥିବ ।
ଏବେ ସିନା ଆସିଅଛ ଏକୁଟିଆ ହୋଇ
ରାଜା ହୋଇଥିଲେ ସୈନ୍ୟମାନେ ସଙ୍ଗେ ରହି ।
ରଥ ଗଜ ପଦାତିକ ପାଶ ମନ୍ତ୍ରୀ ଥାନ୍ତି
ତେମନ୍ତ ହୋଇଲେ ଶୋଭା କେମନ୍ତ ଦିଶନ୍ତି ।
ସଜ୍ଜନ ଲୋକମାନେ ଯେ କରୁଥାନ୍ତେ ଭୟ
ଏବେ ତୁମ୍ଭେ ଏକାକୀ ଦରିଦ୍ରର ପ୍ରାୟ ।
ଏଠାକୁ ଆସିଛ ଦେଖା ଭେଟ ପଡ଼ିଲକୁ
ରାଜା ହୋଇଥିଲେ ଭୟେ କମ୍ପୁଥାନ୍ତା ବୁକୁ ।
ନୃପତିପଣର ସୁଖଠାରୁ ବଳି ନାହିଁ
ଆସ ସମସ୍ତେ ରହିବା ଏବେ ସଙ୍ଗ ହୋଇ ।
ତୁମ୍ଭ ସଙ୍ଗତେ ସାଧିବା ଆମ୍ଭେ ଭଜନପୂଜା
କାଶ୍ୟପ ବରେ ତୁମ୍ଭଙ୍କୁ କେହି ନୁହେଁ ସରି ।
ହିରଣ୍ୟ ବୋଇଲ ଆମ୍ଭେ ଆସିବୁଁ ଏଠାକୁ
ଏ ପୁର ରୁଚିଲ ବଡ଼ ମୋହର ମନକୁ ।
ପିତାଙ୍କୁ କହି ଆସିବୁଁ ଏଠାକୁ ସତ୍ୱର
ପିତା ମାତା ପଥ ଚାହିଁ ବସିଥିବେ ମୋର ।

ଅମୃତ ବୋଇଲ ତାଙ୍କୁ ଯେବେ ଏତେ ଡର
କେମନ୍ତ କରିଣ ତୁମ୍ଭେ ସାଧିବ ସଂସାର ।
ହସି ଉଠିଲା ହିରଣ୍ୟ ଦୈତ୍ୟ କଥା ଶୁଣି
ଯେତେ କାଳ ତହିଁ ଥିବା ଗ୍ରନ୍ଥ ଏବ ପୁଣି ।
ଅମୃତ ବୋଇଲ ଆଜ ଏ ସ୍ଥାନରେ ଥାଅ
କାଲି ପ୍ରଭାତରୁ ଉଠି ବେଗ ଧାଇ ଯାଅ ।
ତୁମ୍ଭେ ଆମ୍ଭେ ଏକାକୁଳେ ହୋଇଅଛୁ ଜାତ
ଏଠାରେ ରହିଲେ କେବେ ନ ଯିବ ମହତ୍ୱ ।
ହିରଣ୍ୟ ବୋଇଲ ତାହା ହେଲି କାହିଁପାଇଁ
କ୍ଷାନ୍ତି କୁଟୁମ୍ବ ସ୍ଥାନରେ ଆଜ ରହ ଖାଇ ।
ପୁଣେନ ଏଠାକୁ ଆସି ଏକତ୍ରେ ରହିବୁଁ
ଉତ୍ତର ହେଲା ମେଲାଣି ଦିଅ ଆମ୍ଭେ ଯିବୁଁ ।
ଏମନ୍ତ କହି ଉଠିଲେ ସେ ବେଗି ରାକ୍ଷସ
ଅମୃତ ଦୈତ୍ୟ ପଚ୍ଚରେ ତୁମ୍ଭ ନାମ କସ ।
କଶ୍ୟପଙ୍କ ପୁତ୍ର କହେ ମୋ ନାମ ହିରଣ୍ୟ
ଏହା ନାମ ହିରଣ୍ୟାକ୍ଷ ଅଟେ ମୋର ସାନ ।
ଶୁଣିକରି ସେ ରାକ୍ଷସ ଆନନ୍ଦିତ ହେଲା
ଆମ୍ଭ ପ୍ରତି ଦୟା ଥିବ ବୋଲିଣ କହିଲା ।
ହିରଣ୍ୟ ବୋଇଲେ ଆମ୍ଭର ଛନ୍ଦ ନାହିଁ ଲେଶ
ଆମ୍ଭଙ୍କୁ ରାଜା କରିଣ ବୁଝିବ ବିଶେଷ ।
ଆଜଠାରୁ ତୁମ୍ଭେ ହେଲ ମୋର ପ୍ରିୟଜନ
ଏହା କହି ଚଳିଗଲେ ଭାଇ ବେନି ଜନ ।
ବାଟେ ଯାଉଁ ଯାଉଁ ସଦା ବୁଲଇ ଯାଆନ୍ତି
ବନମତ୍ତ କରିଣ ଶୂନ୍ୟ ପ୍ରହାରନ୍ତି ।
ହୁଙ୍କାର ନାଦ କରିଣ ଯାନ୍ତି ଧାଇଁ ଧାଇଁ
ପାଦଘାତେ ଦଲି ଦଲ କମ୍ପୁଥାଏ ମହୀ ।
ଆପଣା ଭୁବନେ ଯାଇ ହୋଇଲେ ପ୍ରବେଶ
ସେହିଠାରୁ ଚଳନ୍ତୁଛି ବଡ଼ିମା ବିଶେଷ ।
ହେ ଅନନ୍ତ ପ୍ରଭୁ ତବ ଅନନ୍ତ ମହିମା
କିଏ ସେ କହି ପାରିବ ଆଦ୍ୟ ଶେଷ ସୀମା ।
ତୁମ୍ଭ ଏକଲୋମ କୂପେ କୋଟି କୋଟି ହୋଇ
କେତେ ପୃଥ୍ୱୀ କେତେ ସୂର୍ଯ୍ୟ ଚନ୍ଦ୍ର ଛନ୍ତି ରହି
ଏମନ୍ତ ବିରାଟ ରୂପ ଧରିଛ ଆପଣ
କଳନା କରିବ କାହିଁ ନର କ୍ଷୁଦ୍ର ପ୍ରାଣ ।
ତେଣୁ ମନ ବଚନର ତୁମ୍ଭେ ଅଗୋଚର
ପ୍ରାଣୀଙ୍କ ହିତ ନିମନ୍ତେ ହେଲ ଅବତାର

ସବୁ ଅବତାର ସାର ଅଟ ଜଗନ୍ନାଥ
ସେ ମୁଖ ଦର୍ଶନ କଲେ ନ ଥାଏ ଦୁରିତ ।
ଚକା ବଇଠିରେ ବଡ଼ ଦେଉଳ ଭିତରେ
ବସି ବୁହାସ ଶୁଣୁଛ ଭକତଙ୍କ ଡାକରେ ।
ଭକ୍ତ ତୁମ୍ଭର ସର୍ବସ୍ୱ ଭକ୍ତ ତୁମ୍ଭ ପ୍ରାଣ
ଏହିକଥା ସଦାକହେ ନାନାଦି ପୁରାଣ ।
ଏବେ କଳକାଳକୁ ତା ଦେଲଣି ପାଶୋର
ସେତେ ଡାକିଲେ ନ ଶୁଭେ କର୍ଣ୍ଣକୁ ତୁମ୍ଭର ।
ଗିରି ଗୋବର୍ଦ୍ଧନ ପରା ଟେକିଥିଲ ହେଳେ
ଇନ୍ଦ୍ର ବିବାଦେ ରଖିଲ ଗୋପିମା ଗୋପାଳେ ।
ମୋର ଡାକିବା ତାଠାରୁ ହୋଇଲା କି ଭାର
ତେଣୁ ଭଯେ ଶୁଣୁ ନାହିଁ ମୋହର ଗୁହାରି ।
ଦୟାଶୀଳ କ୍ଷମାଶୀଳ ବୋଲି ଜଗତେ ବାନା
ବାନା ମିଛ ନୁହେଁ ବୋଲି ଡାକ କହେ କନା ।
ଡାକି ଡାକି ବେଳ କାଳ ଯାଉଅଛି ବ୍ୟର୍ଥ
ଥରେ ମାତ୍ର ଦେଖାଦିଅ ନୀଳାଚଳ ନାଥ ।
ଯମ ହାତରେ ପଡ଼ିଲେ କି କରିବ ଆଉ
ତୁମ୍ଭର ସେ ବଡ଼ ପଣ ଯିବ ଥାଉଁ ଥାଉଁ ।
ଇଚ୍ଛାମୟ ହରି ତୁମ୍ଭେ ନୀଳାଦ୍ରି ବିହାରୀ
ନାରାୟଣ କାମପାଳ ଅଛୁ ଅନୁସରି ।

—*—

## ହିରଣ୍ୟ ହିରଣ୍ୟାକ୍ଷ ବିବାହ

କହନ୍ତି ଶ୍ରୀ ଶୁକମୁନି ଶୁଣ ନୃପବର
ମାତା ପିତାଙ୍କ ନିକଟେ ମିଳନ୍ତି କୁମର ।
ମସ୍ତକରେ କର ଥୋଇ ନମସ୍କାର କଲେ
ଭୋଜନ କରିବା ପାଇଁ ଯାଇଣ ବସିଲେ ।
ମାତା ପରଶନ୍ତି ନେଇ ପକ୍ୱ ଦ୍ରବ୍ୟମାନ
ଭୁଞ୍ଜିଣ ସନ୍ତୋଷ ହେଲେ ବେନି ଯାତୁଧାନ
ଆଚମନ ସାରି ଦୁହେଁ ତାମ୍ବୁଳ ଭୁଞ୍ଜିଲେ
କାଶ୍ୟପମୁନି ଡାକନ୍ତେ ତାଙ୍କ ପାଶେ ଗଲେ ।
ପିତା ପଚାରନ୍ତି ତାଙ୍କୁ ହସ ହସ ହୋଇ
ମର୍ତ୍ତ୍ୟପୁରେ କି ଦେଖିଲ ଯାଇ ଦୁଇ ଭାଇ ।

ହିରଣ୍ୟ ବୋଇଲା ତୁମ୍ଭ ଆଜ୍ଞା ମାଗି ଗଲୁଁ
ନିଷ୍କଳ ଦେଶର ଏକ ନଗର ଦେଖିଲୁଁ ।
ତହିଁ ଯାଇ ଆମ୍ଭେ ଦୁହେଁ ହୋଇଲୁ ପ୍ରବେଶ
ଯେତେକ ଦେଖିଲୁ ତହିଁ ସମସ୍ତେ ରାକ୍ଷସ ।
ଆମ୍ଭଙ୍କୁ ଆମ୍ଭର କୁଳ ଗୋତ୍ର ପଚାରିଲେ
ତୁମ୍ଭ ପୁତ୍ର ବୋଲନ୍ତେ ସେ ଉଜରବ କଲେ ।
ଦଣ୍ଡେ ମାତ୍ର ତହିଁ ରହି ଆଇଲୁ ପଳାଇ
ହେ ପିତା ବଡ଼ାଇ ସୁଖ ଲାଗିଲାକ ମହି ।
ସେ ସ୍ଥାନରେ ରହିବାକୁ ମନ ହୁଏ ମୋର
ତୁମ୍ଭ ଆଜ୍ଞା ହେଲେ ଥାନ୍ତୁ କରି ଘରଦ୍ୱାର ।
ହିରଣ୍ୟ କହନ୍ତେ ମୁନି ସକଳ ଜାଣିଲେ
ପୁତ୍ରଙ୍କ ମୁଖକୁ ଚାହିଁ ବଚନ ବୋଇଲେ ।
ତହିଁ ରହିବାକୁ ଯେବେ ମନ ହେଲା ତୋର
ଦିନାକେତେ ଯାଇ ତୋଳି ଦିଆଇବା ପୁର ।
ତାହା ଶୁଣି ବେନି ପୁତ୍ର ସନ୍ତୋଷ ହୋଇଲେ
ପରୀକ୍ଷିତ ଆଗେ ଶୁକ ପୁଣି ହିଁ କହିଲେ ।
ଏଥିପରେ ଯାହା ହେଲା ଶୁଣ ନୃପବର
କାଶ୍ୟପ ଦିତି ଦୁହେଁ ଯେ କରନ୍ତି ବିଚାର
କହନ୍ତି କାଶ୍ୟପ ଋଷି ଆଗୋ ଦିତି ଶୁଣ
ମର୍ତ୍ତ୍ୟେ ରହିବା ଇଚ୍ଛନ୍ତି ପୁତ୍ର ବେନି ଜଣ
ଆମ୍ଭ ଆଗେ କହୁଥିଲେ କାଲି ବସିଥାଇ
ତେଣୁ ତୋହର ଆଗରେ କହିଲୁରେ ସତ୍ୟ
ଦିତି ବୋଇଲେ ଶତ୍ରୁକୁ କେମନ୍ତ ଆସଇ
ମୁନି ବୋଇଲେ ରହନ୍ତୁ ସେ ସ୍ଥାନରେ ଯାଇ ।
ଯାହା ସେ ବୁଝିଅଛନ୍ତି ତାହାଙ୍କ ପ୍ରମାଣ
ମୁହିଁ ନାସ୍ତି କଲେ ତାହା ନୋହିବ ବାରଣ ।
ଯେବଣ ଲୋକର ଠାରେ କଥା ନ ରହଇ
ତାକୁ ନ କହିବା ଭଲ ବିଚାର ଅଟଇ ।
ଯେବେ ଷଣ୍ଢବୃତ୍ତି କରି ମନେ ବିଚାରିଲେ
ଯେତେ ନିଷେଧିଲୁ ତହୁଁ ନିବୃତ୍ତ ନ ହେଲେ ।
ତୋର ମୋର ନାସ୍ତି କଲୁ କେତେ ଯେ ପ୍ରକାର
ନ ମାନି ଷଣ୍ଢିସ୍ୱ ବୃତ୍ତି କଲେ ବ୍ୟବହାର ।
ଆମ୍ଭେ ଯେବେ ନାସ୍ତି କରୁ କୌଣସି ବିଷୟ
ନ ରହିବ ସେହି କଥା କହୁଛି ନିଶ୍ଚୟ ।
ଦିତି ବୋଇଲେ ରହନ୍ତୁ ତେବେ ମର୍ତ୍ତ୍ୟେ ଯାଇ
ସ୍ଥାନ ଗୋଟିଏ ନିଶ୍ଚୟ କରିଦିଅ ତହିଁ ।

ମୁନି ବୋଇଲେ ସଉଞ୍ଚ ଦ୍ୱୀପେ ଥାନ୍ତୁ ଯାଇ
ବିଶ୍ୱକର୍ମା ପୁର ନିର୍ମା କରୁ ତହିଁ ଥାଇ ।
ସ୍ୱର୍ଗକୁ ନିକଟ ହେବ ସେ ସ୍ଥାନେ ରହିଲେ
ତାହା ଶୁଣି ଦକ୍ଷଦେବ ମୁନିଙ୍କି କହିଲେ ।
ପୁତ୍ରଙ୍କୁ ତେବେ ହେ ସ୍ୱାମୀ ବିବାହ କରାଅ
ତହିଁ ଉତ୍ତାରୁ ସେ ପୁରେ ତାଙ୍କୁ ନେଇ ଥୁଅ ।
କାଶ୍ୟପ ବୋଇଲେ କନ୍ୟା ଅଛୁ ଅବା କାହିଁ
ଯାଇନାହାନ୍ତି ଏକ୍ଷଣି ଥାନ୍ତୁ ଏହିଠାଇଁ ।
ଦେବତାଏ ତ ଏହାଙ୍କୁ ଦୁହିତା ନ ଦେବେ
ତାହାଙ୍କ ସଙ୍ଗରେ ଏତ ଦ୍ୱନ୍ଦ୍ୱ ଆରମ୍ଭିବେ
ଭୁହିତ ସହଜେ ହେଲୁ ଅସୁରଙ୍କ ମାତ
ତୋର ଗର୍ଭରୁ ଦନୁଜ ହେଉଛନ୍ତି ଜାତ ।
ସେହି ଦୋଷ ଗୁଣ ମଧ୍ୟ ଅଛୁ ତାଙ୍କ ତହିଁ
ଦେବତାଏ ଦୁହିତାକୁ ଦେବେ ଅବା କାହିଁ ।
ସମସ୍ତେ ଜାଣନ୍ତି ତୋର ଗର୍ଭର ଚରିତ
ଦୈତ୍ୟହୋଇନଥିଲେହେଁ ବୋଲିବେ ଦଇତ
ଭୁ ଗୋ ଦକ୍ଷ ଯେଉଁକାଳେ ଦୈତ୍ୟଙ୍କ ଜନମ
ତେଣୁକରି ତାକୁ କେହି ନ ଦେବେ କାମିନୀ ।
ଦକ୍ଷ ବୋଇଲେ ପ୍ରଥମ ମୋର ପୁତ୍ରମାନେ
ସେମାନେ ଦେବକନ୍ୟାଙ୍କୁ ପାଇଲେ କେସନେ
କାଶ୍ୟପ ବୋଲିଲେ ତେବେ ଥିଲେ ସମ ସରି
ଏବେତ ଅସୁରମାନେ ଦେବଙ୍କ ବଇରି ।
କଥାଏ କହିବି ଯାହା ଶୁଣିଅଛୁ ମୁହିଁ
ପୂର୍ବେ ସୁଧର୍ମା ସଭାକୁ ଦେବେ ଥିଲେ ଯାଇ ।
ବ୍ରହ୍ମା ରୁଦ୍ର ଆଦିକରି ସର୍ବ ଦିଗପାଳେ
ବସିଣ ଥିଲେ ସମସ୍ତେ ସୁଧର୍ମାମଣ୍ଡଳେ ।
ତୋର ପୁତ୍ରମାନେ ଯାଇ ପ୍ରବେଶ ହୋଇଲେ
ନମସ୍କାର ନ କରିଣ ବାହୁଡ଼ି ଅଇଲେ ।
ଅବାଧତା ଦେଖି କ୍ରୋଧ କଲେ ପ୍ରଜାପତି
ବୋଇଲେ କାଶ୍ୟପ କୋପେ ଏ ଦୈତ୍ୟ ଉତ୍ପତ୍ତି
ସେ ଲୋକେତ ତାଙ୍କୁ ଅବା କନ୍ୟା ଦେବେ କାହିଁ
ଏ ବଚନ ଶୁଣି ଦକ୍ଷ ବୋଇଲେକ ବହିଁ ।
ଦେବକନ୍ୟା ନୋହୁ ବିଭା କରିବା ଅସୁରି
ମୁନି ବୋଇଲେ ଅବଶ୍ୟ ହେବ ଏହିପରି ।
ଦକ୍ଷ ବୋଇଲେ ଅସୁର ଦେବତା ସମାନ
ଏବେ ଦେବତାଏ ବଡ଼ ହୋଇଲେ କେସନ ।

ପୁଲୋମାର ଘରୁ ବିଭାକରି ଝିଅ ଦୁଇ
ସେ ଆମ୍ଭ ବନ୍ଧୁ ଇନ୍ଦ୍ରକୁ କନ୍ୟା ଅଛୁ ଦେଇ ।
ଦକ୍ଷଙ୍କ ବଚନେ ମୁନି ହେଲେ ମୌନବ୍ରତ
ଏମନ୍ତକାଳେ ମିଳିଲେ ଆସି ବେନି ସୁତ ।
ମାତା ପିତାଙ୍କ ସମ୍ମୁରେ ଆସି ଉଭା ହେଲେ
ନିତ୍ୟକର୍ମ କରିବାକୁ ମୁନି ଉଠି ଗଲେ ।
ମାତାଙ୍କ ମୁଖକୁ ଚାହିଁ ବୋଲନ୍ତି କୁମର
କେଉଁ କଥା କହୁଥିଲେ ତୁମ୍ଭଙ୍କୁ ପିଅର ।
ମାତା ବୋଇଲେ ରହିବ ପର ମର୍ତ୍ତ୍ୟପୁରେ
ସେହିକଥା କହିଥିଲି ପିତାଙ୍କ ସମ୍ମୁରେ ।
କହୁଥିଲେ ସେହିକଥା ମୋହର ଆଗରେ
ଶୁଣି ଆଗ୍ରହେ ପୁଚ୍ଛନ୍ତି ମାତାଙ୍କୁ କୁମରେ ।
ରହିବା ନ ରହିବାର ମନ କଲ କିସ
କହ ଗୋ ଜନନୀ ଆମ୍ଭେ ଶୁଣି ହେଉ ତୋଷ ।
ମାତା ବୋଇଲେ ରହିବ ତୁମ୍ଭେ ଯାଇଁ ତହିଁ
ଆଗେ ମନ୍ଦିର ପ୍ରସ୍ତୁତ କରିଦେଲେ ଯାଇ ।
ତାହା ଶୁଣି ବେନି ଦୈତ୍ୟ ଆନନ୍ଦ ହୋଇଲେ
ଶୁଣ ଆହେ ମହାରାଜା ଶ୍ରୀ ଶୁକ କହିଲେ ।
ମହନ୍ତରେ ଦନାଜେତେ ଚନ୍ଦ୍ର ବହିଗଲା
ପୁତ୍ର ବିବାହ ମୁନିଙ୍କ ମନେ ଚିନ୍ତା ହେଲା ।
ପୁଲୋମା ବୋଲିଣ ଜଣେ ଥିଲା ସେ ଅସୁର
ଦେବତାଙ୍କ ସଙ୍ଗତରେ ବଡ଼ ପ୍ରୀତି ତାର ।
ନାରାୟଣଙ୍କ ଚରଣେ କରେ ଆରାଧନ
ବ୍ରହ୍ମ ରୁଦ୍ରଙ୍କୁ ସେ ନିତ୍ୟ କରଇ ଦର୍ଶନ ।
ଦେବତାଙ୍କ ସଙ୍ଗତରେ ବିହାର ତାହାର
ଜ୍ଞାନବନ୍ତ ଦଇତ ସେ ସ୍ୱର୍ଗପୁରେ ଘର ।
ଦେବତାଙ୍କ ସଙ୍ଗତରେ ସଭାରେ ସେ ବସେ
ସକଳ କଥା କହନ୍ତି ତାହାକୁ ବିଶ୍ୱାସେ ।
ବ୍ରହ୍ମାଙ୍କ ପୂଜା ପୁଣ୍ୟରୁ ସେହି ହେଲା ଜାତ
ପୁଲୋମା ନାମକୁ ଦେଖୁ ଦେଲେ ଦଇବତ ।
ଆବରହିଁ ଦେବକନ୍ୟା ତାକୁ ଧନ୍ୟ ଦେଲେ
ଘର ଦେଇ ସ୍ୱର୍ଗପୁରେ ତାହାକୁ ରଖିଲେ ।
ଜ୍ଞାନବନ୍ତ ଦୟାବନ୍ତ ଅଟଇ ଅସୁର
ଦେବତାଙ୍କ ପ୍ରାପ୍ତ ଗୁଣ ଆଚାର ତାହାର ।
ଦେହାଙ୍ଗ ବସ୍ତ୍ର ପିନ୍ଧଇ ମୁକୁଟ ତା ଶିର
ଅଳଙ୍କାର ଭୂଷଣ ତା ଦେବ କଳେବର ।

କାଳେ ତା ଜନ ଦୁହିତା ହୋଇଲେକ ଜାତ
ଶଚୀ ପୁଲମା ଜନୁ ସେ ଜନ ନାମେ ଖ୍ୟାତ ।
ପୂର୍ବେ ଜ୍ୟେଷ୍ଠ ଦୁହିତାକୁ ଦେଲ ମଘବାରେ
ଆବର ବେନ ଦୁହିତା ଅଛନ୍ତି ଗୃହରେ ।
ବୟସ୍କା ହୋଇଅଛନ୍ତି ସେହି ବେନ ନାରୀ
ଭଲ ରୂପରେ ଜାଣନ୍ତି ତାଙ୍କୁ ତପସ୍ୱୀ
ଏକଦିନେ ଶୁକ୍ରଙ୍କୁ ସେ ବୋଇଲେ ଡକାଇ ।
ପୁଲୋମାର ଦୁଇଝିଅ ଛନ୍ତି ଅବିବାହୀ ।
ତୁତ ତାହାଙ୍କର ଗୁରୁ ହୋଇଅଛୁ ପୁଣି
ଇଚ୍ଛେ ମୋ ପୁଅଙ୍କୁ ବିଭା କର ତୁ ଦୁଲଣୀ ।
ଯାଅ ଏ କଥା କହିବୁ ବୁଝାଇ ତାହାକୁ
ଯାହା କହିବ କହିବୁ ଆସିଣ ଆମ୍ଭଙ୍କୁ ।
କାଶ୍ୟପ ବଚନେ ଶୁକ୍ରେ ଆନନ୍ଦିତ ହୋଇ
ବୋଇଲେ ଏକ୍ଷଣି ତେବେ ବୁଝିଆସେ ଯାଇ ।
ଏମନ୍ତ କହି ସେଠାରୁ ଶୁକ୍ର ଚଳିଗଲେ ।
ପୁଲୋମାର ଭବନରେ ପ୍ରବେଶ ହୋଇଲେ ।
ଶୁକ୍ରଙ୍କୁ ଦେଖି ଦଇତ ପ୍ରଣିପାତ ହୋଇ
ପାଦ ଧୋଇ ହେମାସନ ଦେଲକ ଯୋଗାଇ ।
ପଚାରଇ ପ୍ରଭୁ କେଣେ କଲ ଆଗମନ ।
ଶୁକ୍ର କହନ୍ତି ଅଇଲୁଁ ତୋର ସନ୍ନିଧାନ ।
କାଶ୍ୟପଙ୍କର ଅଛନ୍ତି ଦୁଇଟି କୁମର
ତାହାଙ୍କ ନାମ ହିରଣ୍ୟ ହିରଣ୍ୟାକ୍ଷ ବୀର ।
ତାଙ୍କୁ ତୋ ଦୁଇଟି ଝିଅ ବିଭା କରିଦିଅ
ସେ ତୋର ପୁରୁଣା ବନ୍ଧୁ ଏବେ ପୁଣି ହୁଅ ।
ବଡ଼ ଭାଗ୍ୟ ପାଇଅଛ କାଶ୍ୟପ ସମ୍ବନ୍ଧି
ଏକଥା ଶୁଣି ଆନରେ ନ ବଳାଅ ବୁଦ୍ଧି ।
ତାହା ଶୁଣିଣ ପୁଲୋମା ସନ୍ତୋଷ ହୋଇଲ
ଯେ ତୁମ୍ଭର ଆଜ୍ଞା ତାହା କରିବି ବୋଇଲ ।
ଦେବି ତାକୁ ଦୁଇକନ୍ୟା ପ୍ରଣାମ ମୋହର
କଶ୍ୟପ ସଙ୍ଗେ ଆସନ୍ତୁ ସେ ବେନି କୁମର ।
ଶୁକ୍ରାଚାର୍ଯ୍ୟ ବୋଇଲେ ସେ ଆସିବେ କେମନ୍ତ
ତାଙ୍କଠାରୁ ଶ୍ରେଷ୍ଠ ହୋଇ ଅଛୁ କେ ଜଗତ ।
ତାଙ୍କଠାରୁ ଏ ସୃଷ୍ଟି ହେଲ ଉତପନ୍ନ
ତେଣୁ ଲୋକ ଆସିବେ କି ତୋହର ଭବନ
ପୁଲୋମା ବୋଇଲ ତୁମ୍ଭେ ପୁଚ୍ଛି ଆସ ଯାଇ
କୋହିଲେ ଦୁହିତା ଦୁଇ ଦେବି ମୁଁ ପଠାଇ ।
ପୁଲୋମା ବଚନେ ଶୁକ୍ର ବାହୁଡ଼ି ଅଇଲେ
କାଶ୍ୟପ ମୁନି ଆଶ୍ରମରେ ପ୍ରବେଶ ହୋଇଲେ ।
ନିକଟେ ବସିଲେ ଯାଇ କରି ନମସ୍କାର
ବୋଇଲେ ତୁମ୍ଭ ଆଜ୍ଞାରେ ଗଲି ତାର ଘର ।
ତୁମ୍ଭେ ଯାହା କହିଥିଲ କହିଲି ସମସ୍ତ
ବୋଇଲା ଆସନ୍ତୁ ସଙ୍ଗେ ଘେନି ବେନି ସୁତ ।
ଏମନ୍ତ ଶୁଣି କାଶ୍ୟପ ହସିଣ ବୋଇଲେ
ଏକଥା ତୋର ମନକୁ ଆସିଲା କି ଭଲେ ।
ଶୁକ୍ର ବୋଇଲେ କହିଛି ଆଗରୁ ତାହାକୁ
କନ୍ୟା ସଙ୍ଗତରେ ଘେନି ଚଳିବୁ ସେଠାକୁ ।
ଏମନ୍ତ ଶୁଣି ବୋଇଲା ପୁଚ୍ଛି ଆସ ଯାଇ
ତେଣୁକରି ଅଇଲି ମୁଁ ବୁଝିବାର ପାଇଁ ।
କାଶ୍ୟପ ବୋଇଲେ ଏବେ କନ୍ୟା ଘେନି ଆସ
ଆଜ୍ଞା ପାଇ ପୁନର୍ବାର ଗଲେ ଭୃଗୁଶିଷ୍ୟ ।
ଦୈତ୍ୟବର ଆଳୟରେ ପ୍ରବେଶିଲେ ଯାଇ
ପଚାରଇ ସେ ପୁଲୋମା ତାହାଙ୍କୁ ଅନାଇ ।
କେବଣ କଥା ବୋଇଲେ ମହାତପଶୀଳ
ଶୁକ୍ରବୋଇଲେ କନ୍ୟାଙ୍କୁ ସଙ୍ଗେ ଘେନି ଚଳ ।
ଏଠାକୁ ସେ ବିଭାହେଇ ଆସିବେ କେମନ୍ତ
ଏକଥାକୁ ନ ବିଚାରୁ ଆପଣାର ଚିତ୍ତ ।
ତୁ ସିନା ଆମ୍ଭଙ୍କୁ ପୁଣି ଦେଲୁ ପଠାଇ
ଆମ୍ଭେ ଯାହା କହିଥିଲୁ ତା ହେଲ କି ନାହିଁ
ସେ କଥା ଶୁଣି ପୁଲୋମା ସମ୍ମତ କଲ
ହେଉ ତେବେ ସେଠାବକୁ ନେବଇଁ ବୋଇଲା ।
ଏମନ୍ତ କହି କନ୍ୟାଙ୍କୁ ସୁବେଶ କରାଇ
ଶୁକ୍ରଙ୍କ ସଙ୍ଗେ କାଶ୍ୟପ ଗୃହେ ମିଳେ ଯାଇଁ ।
ଶୁକ୍ର ବୋଇଲେ କନ୍ୟାଙ୍କୁ ଆଣିଲୁ ସଙ୍ଗରେ
ଶୁଣି ମୁନି ଆନନ୍ଦିତ ହୋଇଲେ ମନରେ ।
ବୋଇଲେ ମୋର କଟକ ତାଙ୍କୁ ଘେନି ଆସ
ଆଜ୍ଞାପାଇଁ ଶୁକ୍ର ଆଣି କରିଲେ ପ୍ରବେଶ ।
ମୁନିଙ୍କୁ ଦେଖି ପୁଲୋମା ହୋଇ କୃତକୃତ୍ୟ
ସାଷ୍ଟାଙ୍ଗେ ଭୂମିରେ ଲୋଟି କଲ ପ୍ରଣିପାତ ।
ସନ୍ତୋଷେ କଲ୍ୟାଣ କରି ତାଙ୍କୁ ମୁନିବର ହିଁ
ଭୂମିରେ ତୋଳି ବୋଲନ୍ତି ବସ ହେ ପୁଲୋମା ।
ମୁନିଙ୍କ ଆଦେଶ ପାଇ ବସିଲ ପାଶରେ
କନ୍ୟା ଉଭା ହୋଇଛନ୍ତି ଆସନ ତଳରେ ।

ମୁନିଙ୍କ ଚରଣେ କନ୍ୟା ପ୍ରଣିପାତ ହେଲେ
ଆନନ୍ଦରେ ମହାମୁନି କଲ୍ୟାଣ ବାଞ୍ଛିଲେ ।
ରୂପ ଗୁଣରେ ସୁନ୍ଦର ଅମୂଲ୍ୟ ପ୍ରତିମା
କନ୍ୟାଙ୍କୁ ଦେଖି ସନ୍ତୋଷ ହେଲେ ମୁନି ବ୍ରହ୍ମା ।
ବୋଇଲେ ଗୃହକୁ ନିଅ ଏହି କନ୍ୟା ବେନି
ହସ୍ତ ଧରି ଘେନିଗଲେ ହିରଣ୍ୟ ଜନନୀ ।
ଗୃହ ଭିତରକୁ ନେଲେ ଦେଇ ହୁଳହୁଳି
କନ୍ୟାଙ୍କୁ ପାଇ ନାରୀଏ ଉଠନ୍ତି କୁରୁଳି ।
ଅନ୍ୟ ଶାଶୂଏ ପ୍ରଶଂସା କରନ୍ତି ଅପାର
ବୋଲନ୍ତି ଅସୁର ଝିଅ ଏଡ଼େକ ସୁନ୍ଦର ।
ପ୍ରତି ଶାଶୂ ପାଦେ କନ୍ୟା ଓଳଗି ହୁଅନ୍ତି
ପୁଲୋମାକୁ ଚାହିଁ ମୁନି ବଚନ ବୋଲନ୍ତି ।
ଆମ୍ଭର ଦୁଇଟି ସୁତ ଅଛନ୍ତି ବର୍ତ୍ତମାନ
ତାଙ୍କୁ ବିଭା କରିବାକୁ ବଳିଲୁ ମନ ।
ପୂର୍ବେ ଦେବତାଏ ଆମ୍ଭ ପୁତ୍ର ମାରିଛନ୍ତି
ତେଣୁ ତାଙ୍କଠାରେ ସୁଖ ନାହିଁ ଆମ୍ଭ ମତି ।
ବଳିଲୁ ତାଙ୍କଘରୁ କନ୍ୟା ନେବୁ ନାହିଁ
ଶୁଣିଲୁ ତୋହର ପୁଣି ଅଛନ୍ତି କନ୍ୟା ଦୁଇ ।
ତୁ ତ ପୂର୍ବବନ୍ଧୁ ତେଣୁ ଶୁକ୍ରେ ପଠାଇଲୁ
ତୁ ମଧ୍ୟ ଆଜ୍ଞାକୁ ମାନି କନ୍ୟାଙ୍କୁ ଆଣିଲୁ ।
ତୁ ବଡ଼ ଧାର୍ମିକ ବୋଲି ବଳିଲା ମୋ ମନ
କାଶ୍ୟପ ବଚନ ଶୁଣି ବୋଲେ ଯାତୁଧାନ ।
ଅନେକ ଯେ ପୂର୍ବପୁଣ୍ୟ ଥିବାରୁ ମୋହର
ପାଇଲି ତୁମ୍ଭ ପରି ଏ ବନ୍ଧୁ ପୁନର୍ବାର ।
ମୋ ଦୁହିତା ବିଭା ହେବେ ତୁମ୍ଭର ନନ୍ଦନ
ଏଥିପାଇଁ ମୋ ଜୀବନ ହେଲା ଧନ୍ୟ ଧନ୍ୟ ।
ସଦା ଦୟା କରିଥିବୁ ମୋତେ ତପସ୍ୱୀ
ଏକଥା ଶୁଣି କାଶ୍ୟପ ବୋଲନ୍ତି ବିହସି ।
ତୁହିତ ପରମ ବନ୍ଧୁ ମୋର ଏ ଜଗତେ
ଦୁହିତା ତିନୋଟି ଦେଲୁ ମୋର ତନୟତେ ।
ତୁମ୍ଭଠି ହୋଇଲୁ ମୋର ଏବେ ଧର୍ମଭାଇ
ତୋତେ ଦେଖି ମୋର ମନ ପ୍ରସନ୍ନ ହୁଅଇ ।
ଦେଖା ତୁ ଏବେ ମୋହର ସେ ବେନି କୁମର
ଏହା କହି ଡକାଇଲେ ତାଙ୍କୁ ମୁନିବର ।
ଦୁଇଭାଇ ଗଦାବିଦ୍ୟା ସାଧି କରୁଥିଲେ
ପିତା ଡକାନ୍ତେ ତତକ୍ଷଣେ ସେଠାରୁ ଆଇଲେ ।

ପିତାଙ୍କୁ ଦର୍ଶନ କରି କଲେ ନମସ୍କାର
ମୁନି ବୋଲନ୍ତି ଏ ବେନି ଆମ୍ଭର କୁମର ।
ପୁତ୍ରକୁ ଚାହିଁ ବୋଲନ୍ତି ଶୁଣ ରେ କୁମର
ଚାହିଁ ଥାଅ ଏ ତୁମ୍ଭର ଅଟନ୍ତି ଶ୍ୱଶୁର ।
ଏହାଙ୍କ ବେନି ଦୁହିତା ଆସିଅଛି ମୁହିଁ
ତୁମ୍ଭେ ଦୁହେଁ ବିଭା ହେବ ଘରେ ଅଛନ୍ତି ରହି ।
ପିତାଙ୍କଠାରୁ ସକଳ ପରିଚୟ ପାଇ
ପୁଲୋମାର ପାଦତଳେ ପ୍ରଣମିଲେ ଯାଇଁ ।
ଜାମାତା ଦେଖି ଦଇତ ସନ୍ତୋଷ ହୋଇଲା
ହସ୍ତଧରି ସେ ବେନିଙ୍କୁ ପାଶେ ବସାଇଲା ।
ତାହାଙ୍କୁ ଦେଖି ସନ୍ତୋଷ ହୋଇଲେ ଦଇତ
ବିଭାପାଇଁ ହୃଦବେଗ କଲା ତାର ଚିତ୍ତ ।
କାଶ୍ୟପ ମୁନିଙ୍କୁ ଚାହିଁ ବୋଇଲେ ଅସୁର
ଆଜ୍ଞାଦେଲେ ଯିବି ମୁହିଁ ବୋଲଇ ଅସୁର ।
ତୁମ୍ଭର କୁମରଙ୍କୁ ମୁଁ କି ଦେଖିବି ମତି
ଅକଳଙ୍କ ଚନ୍ଦ୍ରମାରେ ତେଜ ଅଗ୍ନି କାନ୍ତି ।
ଶୁଣି କାଶ୍ୟପ ମନରେ ଆନନ୍ଦ ହୋଇଲେ
ଯାଅ ନିଜପୁର ବୋଲି ତାକୁ ଆଜ୍ଞା ଦେଲେ ।
ତତକ୍ଷଣେ ଦୈତ୍ୟବର ନିଜପୁରେ ଗଲା
ଆପଣା ଭୁବନେ ଯାଇ ପ୍ରବେଶ ହୋଇଲା ।
ଶୁକ୍ର ମଧ୍ୟ ତାହାଙ୍କର ଭୁବନେ ଚଳିଲେ
ନିତ୍ୟକର୍ମ କରିବାକୁ ମହାମୁନି ଗଲେ ।
କହନ୍ତି ଶ୍ରୀ ଶୁକମୁନି ଶୁଣ ନୃପନାଥେ
ଏହିରୂପେ ଚାହିଁ ପୂର୍ଣ୍ଣି ଗଲା ଦିନାକେ[illegible] ।
ଶୁଭଲଗ୍ନେ ବୁଝାବୁଝି କରି ମହାମୁନି
ବେନି ପୁତ୍ର ବିଭାକଲେ ଦଇତ୍ୟ ନନ୍ଦିନୀ ।
ବେଦୀ ଗୁମୁଣ୍ଡିଆ କଲେ ସର୍ବ ନିର୍ମାକର
ତାଙ୍କୁ ବିଭା କରାଇଲେ ଆପେ ତପସ୍ୱୀ ।
ବରୁଣଙ୍କ ପୂଜା କରି ସତ୍ୟ ବାକ୍ୟ କଲେ
ଦ୍ୱିଗୁଣ ବରଣ ଯାଇ ନିତି ଆରମ୍ଭିଲେ ।
ମହାବାକ୍ୟ କରି କୁଶ ଗ୍ରନ୍ଥିକୁ ବାନ୍ଧନ୍ତି
ଗଇଁଠାଳ ଦେଇ କୁଶ ଗ୍ରନ୍ଥିକୁ ଫିଟାନ୍ତି ।
ଦଇତକନ୍ୟାଙ୍କର ଶିରେ ମୁକୁଟ ଶୋଭନ
ଅଗ୍ନି ସ୍ଥାପି ହୋମକାର୍ଯ୍ୟ କରନ୍ତି ବନ୍ଦନ ।
ହିରଣ୍ୟାକ୍ଷ ବିଭା କାର୍ଯ୍ୟ କରି ଏହି ମତେ
ହିରଣ୍ୟାକ୍ଷର ବିବାହ କରିଲେ ତୁରିତେ ।

ଦେବକନ୍ୟା ହୁଳହୁଳି କୌତୁକେ ଦିଅନ୍ତି ।
ଗନ୍ଧର୍ବେ ଏକତ୍ର ହୋଇ ଦୁନ୍ଦୁଭି ବଜାନ୍ତି ।
ଉଭାର କର୍ଦ୍ଦମଙ୍କୁ ସାର ମୁନିବର
ବରକନ୍ୟାଙ୍କୁ ବନ୍ଦାଇ ନେଲେ ଅନ୍ତଃପୁର ।
ମାତା ଅଧାମ ଟାକର ଆଣି ପରଷନ୍ତି
ବରକନ୍ୟା ଦୁହେଁ ଭୁଞ୍ଜି ସନ୍ତୋଷ ହୁଅନ୍ତି ।
ଭୋଜନାନ୍ତେ ଦୁହେଁ କଲେ ଯାଇ ଆଚମନ
ସାତଦିନେ ସରିଗଲା ବିବାହ ବିଧାନ ।
ପୁଲକି କନ୍ୟା ହୋଇଲା ହିରଣ୍ୟ ଘରଣୀ
ଭାନୁକନ୍ୟା ହେଲା ସାନ ଭାଇ ପ୍ରଣୟିନୀ ।
କନ୍ୟାଙ୍କୁ ଯେବଣ ଭୋଗ କଲେ ଦୁଇଭାଇ
ଏହିରୂପେ ଦୁଇବର୍ଷ ଅତୀତ ହୁଅଇ ।
କହନ୍ତି ଶ୍ରୀ ଶୁକମୁନି ଶୁଣ ନରପତି
ମର୍ତ୍ତ୍ୟ ଭ୍ରମଣ ବିବାହ ହେଲା ସମାପତି ।
ଜୟ ଜୟ ହରି ତବ ଅନନ୍ତ ମହିମା
କହି ନ ପାରଇ ଯାହା ଚତୁର୍ମୁଖେ ବ୍ରହ୍ମା ।
ସହସ୍ର ମୁଖେ ବାସୁକି ବର୍ଣ୍ଣି ନ ପାରଇଁ
ତାହା ମୁହିଁ କି ବର୍ଣ୍ଣିବି ନରଦେହ ବହି ।
ପାପିଙ୍କୁ ତାରିବା ପାଇଁ ଜଗନ୍ନାଥ ନାମ
ବହି ବିଜେ କରିଅଛ ନୀଳଗିରି ଧାମ ।
ସେହି ନାମ ଗୋଟି ମୋର ହେଉ କଣ୍ଠମାଳ
ନାରାୟଣ କାମପାଳ ଇଚ୍ଛଇ କେବଳ ।

—*—

## କ୍ରୌଞ୍ଚଦ୍ୱୀପ ରତ୍ନାବଳୀ କଟକରେ ହିରଣ୍ୟ ଓ ହିରଣ୍ୟାକ୍ଷ ଦୁଇଭାଇଙ୍କର ବସତି

ରାଜା ପରୀକ୍ଷିତ ପୁଣି କହେ ମୁନିବର
ଆଉ କେଉଁ କୃତ୍ୟ କଲେ କାଶ୍ୟପକୁମର
ଏହା ମୋତେ ବିସ୍ତାରିଣ କହ ମୁନିସାଇଁ
ଶୁଣିବି ବିଷ୍ଣୁ ପୁରାଣ ଚରିତକୁ ମୁହିଁ
କାଶ୍ୟପ ଭୁବନ ତେଜ ଗଲେ କି କି ଦୂର
ସେହିକଥା କହି ତୃପ୍ତି କର ମୁନିସାଇଁ ।
କହନ୍ତି ଶ୍ରୀ ଶୁକମୁନି ଶୁଣ ନରନାଥ
ମୁନିଙ୍କି କହନ୍ତି ଯାଇ ସେ ବେନି ଦଇତ ।
ଆମ୍ଭର ଆବର୍ଣ୍ଣାଳି ନାତ ସମ୍ଭାଳୁ ବହୁତ
ସ୍ଥାନ ଖଣ୍ଡି ଏକ ଦିଅ ରହୁ ବେନି ଭ୍ରାତ ।
ତାଙ୍କ ବଚନେ କାଶ୍ୟପ ତହୁଁ ଚାଲିଗଲେ
ବିଶ୍ୱକର୍ମାଙ୍କ ନିକଟେ ପ୍ରବେଶ ହୋଇଲେ ।
ଦେଖି ନମସ୍କାର କଲେ ତାଙ୍କୁ ବିଶ୍ୱକର୍ମା
ପଚାରିଲେ କେଉଁ ବିଜେ କଲ ମହାତ୍ମା ।
ଏହା କହିଣ ଆସନ ଆଣି ଯୋଗାଇଲେ
ଗଉରବ ପାଇ ତହିଁ କାଶ୍ୟପ ବସିଲେ ।
ମୁନି ବୋଇଲେ ହେ ଶିଳ୍ପୀ ଆସିଛୁ ଯହିଁକି
କଥା ଏ ମାଗିବି ତାହା ଦେଇ ପାରିବ କି ।
କହିଲେ ବୋଲିବୁ ନରୁ ଉଠି ଶିଳ୍ପିବୁ
ତୁମ୍ଭର କଥାକୁ ମୁହିଁ ଆସିଅଛୁଁ ବାବୁ ।
ବିଶ୍ୱବର୍ଦ୍ଧକୀ ବୋଇଲେ ଆଜ୍ଞା ହେବ ଯାହା
ଅବଶ୍ୟ କରିବି ଭାଙ୍ଗି ପାରିବି କି ତାହା ।
ତହୁଁ କାଶ୍ୟପ ବୋଇଲେ ଆମ୍ଭ ବେନି ସୁତ
ମର୍ତ୍ତ୍ୟେ ରହିବାକୁ ଶ୍ରଦ୍ଧା କରିଲେ ବହୁତ ।
ତାଙ୍କ ପାଇଁ ରଚିଦିଅ ଏକଗୋଟି ପୁର
ଆମ୍ଭର କହିବା କଥା ଅନ୍ୟଥା ନ କର ।
କ୍ରୌଞ୍ଚଦ୍ୱୀପର ଉତ୍ତର ସମୁଦ୍ର ତୀରରେ
ଆଜହିଁ ରଚନା କର ପୁରକେ ସେଠାରେ ।
ଯେ ରୂପେ ରାଜାମାନଙ୍କ ଅଟଇ ନଅର
ନିକଟରେ ଥିବ ପୁଣି ପାତ୍ର ମନ୍ତ୍ରୀପୁର ।
ରଥ ଗଜ ପଦାତିକ ରହିବେ ଯେମନ୍ତେ
ସେହି ଅନୁକ୍ରମେ କର କହିବି ମୁଁ କେତେ ।
ମନ ମୁଗ୍ଧ ହେଉଥିବ ଦେଖି ସେହି ପୁର
ଏମନ୍ତ ପୁରେ ରହିବେ ମୋହର କୁମର ।
ଜଗତୀ ଅଟ୍ଟାଳିମାନ ସବୁ ହୋଇଥିବ
ରାଜବିଧି ତହିଁରୁ ଅନ୍ୟଥା ନୋହିବ ।
ଏହା ଶୁଣି ବିଶ୍ୱକର୍ମା ସମ୍ମତ କଲେ
ଆଜ ରାତ୍ର ମଧ୍ୟେ ସର୍ବ କରିବି ବୋଇଲେ ।
ଆଉ ଏକ କଥା ମୋର ଶୁଣ ଶିଳ୍ପୀବର
କହିବାକୁ ଭୁଲିଗଲି ତାହା ଯେବାକାର ।
ରଥ ଦୁଇ ଗୋଟି ପୁଣି କର ନିରମାଣ
ତହିଁ ବସି ପୁତ୍ରମାନେ କରିବେ ଭ୍ରମଣ ।
ସବୁ କଥା ବିଶ୍ୱ ଶିଳ୍ପୀ ସମ୍ମତ କଲେ
ସେଠାରୁ କାଶ୍ୟପ ଉଠି ନିଜପୁରେ ଗଲେ ।

ଏଥୁ ଅନନ୍ତରେ ଶୁଣ ଆହେ ନୃପବର
ସ୍ୱପ୍ନକରେ ବିଶ୍ୱକର୍ମା ରଚିଲେ ସେ ପୁର ।
ଶୁକ୍ର ତାରା ଉଦେ ହୋଇ ହେଲା ଊର୍ଦ୍ଧ୍ୱଗତ
କୁମୁଦ ବାନ୍ଧବ ଚନ୍ଦ୍ର ମଳିନ ହୁଅନ୍ତି ।
ପ୍ରଭାତିଲା ରାତ୍ରି ବହେ ଶୀତଳ ପବନ
କୁକ୍କୁଟ ଡାକିଲା ଦେଖି ଉଷା ଆଗମନ ।
ଦେବାଳୟେ ହେଲା ପୁଣି ମଙ୍ଗଳ ଆଳତି
ଘଣ୍ଟା ଘଣ୍ଟ ଶବଦରେ ପୂର୍ଣ୍ଣ ହେଲା କ୍ଷିତି ।
କାକ କୋକିଳ ଡାକିଲେ ବିଟପି ଡାଳରେ
ବିଟପୀ ହୋଇଲେ ଦୁଃଖୀ ବିଟ ସ୍ଥାନାନ୍ତରେ ।
ପୂର୍ବ ଦିଗରେ ଦିଶିଲା ଲୋହିତର ଆଭା
ମୁନି ଡାକିଲେ ପୁତ୍ରଙ୍କୁ ଉଠ ଆରେ ବାବା ।
କାଲି କହିଥିଲ ତୁମ୍ଭେ ଯିବ ଅନ୍ୟ ବାସ୍ତ
ତାହା ଶୁଣି ଯାଇଥିଲି ବିଶ୍ୱକର୍ମା ପାଶ ।
ସ୍ୱପ୍ନକ ଭିତରେ ସେହୁ ରଚିଥିବ ପୁର
ଚାଲ ତୁମ୍ଭର କଟକ ଦେଖିବା କୁମର
ତାହା ଶୁଣି ବେଦସୂତ ଆନନ୍ଦ ହୋଇଲେ
ପିତାଙ୍କ ସଙ୍ଗେ କଟକ ଦେଖି ବାହାରିଲେ ।
ଆଗେ ଚାଲନ୍ତି କଶ୍ୟପ ପଛେ ବେଦବ୍ରହ୍ମ
ବ୍ରହ୍ମା ସଙ୍ଗେ ଆସନ୍ତି କ ଗନ୍ଧର୍ବ ଗୋଡ଼ାଇ ।
ହେମନ୍ତ ପ୍ରାପ୍ତ ହୁଅନ୍ତି ସେ ବେଦ କୁମର
କାନ୍ଧରେ ପଇତା ଅଛି ହସ୍ତେ ଗଦା ଧର
ନାନା ଅଳଙ୍କାର ଶୋଭା ଦିଶେ ତାଙ୍କ କାୟ
କାଶ୍ୟପ ଦିଶନ୍ତି ବେଦ ବ୍ରହ୍ମାଙ୍କ ସହାୟ
କଟକ ପାଶେ ମିଳିଲେ ଯାଇ ତିନିଜଣ
କଳସେ ଶୋଭା ତହିଁକି ଉଡ଼ଇ ଗଗନ ।
ତିନିଯୋଜନ ପର୍ଯ୍ୟନ୍ତ ଘର ଅଛି ହୋଇ
ଚଉପାଶରେ ପାଚେରି ଅଛି ସେ ଘେରାଇ ।
କଟକରେ କରିଅଛି ଦୁଇଗୋଟି ଦ୍ୱାର
କାନ୍ଥୁଲି କାଙ୍ଗୁରି ଫେର ଅଛଇ ଅପାର ।
ବାଘମୁହିଁ କନ୍ଦ କନ୍ଦ ସୈନ୍ୟ ଘରମାନ
ବେଢ଼ଦ୍ୱାରେ ମରକତ କବାଟ ଶୋଭନ ।
ଦ୍ୱାରମାନ ଥିଲା ତହିଁ ମେଲା ମେଲା ହୋଇ
ତିନିଜଣ ପ୍ରବେଶିଲେ କଟକେ ଧସାଇ ।
ଚତୁର୍ଦ୍ଦିଗ ବୁଲି ବୁଲି ଦେଖୁଛନ୍ତି ପୁର
ଦେଖି ଦୁଇ ଭାଇଙ୍କର ପୁଲକ ଅନ୍ତର

କେଉଁ ଘର ହୋଇଅଛି ହେମନ୍ତର ବର୍ଣ୍ଣ
କେଉଁଘର ଦିଶେ କାଚ ଡଙ୍କା ଦରପଣ ।
ଇଟା ପାଷାଣେ ନିର୍ମିତ କେହି ଅଛି ହୋଇ
ରାଜାର ନବରେ ତହୁଁ ପ୍ରବେଶିଲେ ଯାଇ ।
ସିଂହଦ୍ୱାର ହାତ ଅଟଇ ଗଗନର ଓସାର
କନ୍ଧ ବକନ୍ଧରେ ବାଟ ଅଛଇ ଅପାର ।
ରାଜା ମନ୍ଦିର ଦେଖନ୍ତି ତହିଁ ସତେ ରହି
ଚନ୍ଦ୍ର କିରଣ ପରାଏ ଜ୍ୟୋତି ବିରାଜଇ ।
କେବଣ ଘର ଗୋଟିକ ସୁବର୍ଣ୍ଣେ ନିର୍ମାଣ
କେବଣ ଘର ଦିଶଇ ପୋହଳା ଘଟଣ ।
ଅଗୁରୁ ଚନ୍ଦନ କାଷ୍ଠେ ଗଢ଼ା କେଉଁ ଘର
ବାସ ଚହଟଇ ତହିଁ ବହିଲେ ସମୀର ।
ସୁବର୍ଣ୍ଣର ଖୁଅ କାହିଁ ପୋହଳାର ଶ୍ରେଣୀ
ସୁବର୍ଣ୍ଣର ଗୃହ କାହିଁ ହୀରାର ଗୁଡ଼ଣୀ ।
ହେମ ପିତୁଳା ଲାଗିଛି କାହିଁ କେତେ କେତେ
କେବଣ ଘର ଧବଳମୟ ଅଟେ ଜ୍ୟୋତି ।
କାନ୍ଥିରେ କସ୍ତୁରୀ ପଙ୍କ ହୋଇଛି ଲେପନ ।
କେଉଁଦ୍ୱାରର ନିର୍ମାଣ କେବଳ କାଞ୍ଚନ ।
ପୋହଳାର ସ୍ତମ୍ଭ କାହିଁ ସୁବର୍ଣ୍ଣର ଶ୍ରେଣୀ
ମାଳାରେ କେବଣ ଘର ଅଛଇ ନିର୍ମାଣ ।
ପଞ୍ଚମୁଖୀର କଳସ ବସିଅଛି କାହିଁ
ଭିନ୍ନ ଭିନ୍ନ ପଞ୍ଚରଙ୍ଗ ଝଣ୍ଡା ପୁଣି ତହିଁ ।
କଳା ଶୁକ୍ଳ ରଙ୍ଗ ନାଳ ବୈଜୟନ୍ତୀମାନ
ଉଡ଼ନ୍ତେ ଅତ୍ୟନ୍ତ ଶୋଭା ଦିଶଇ ଗଗନ ।
ଦୃଷ୍ଟିହିଁ ଦେଖିଲେ ଦୁଇ ସୁବର୍ଣ୍ଣର ରଥ
ତାକୁ ଦେଖି ଆନନ୍ଦିତ ହେଲା ତାଙ୍କ ଚିତ୍ତ ।
ସମସ୍ତ ଘର ଦିଶଇ ଅତ୍ୟନ୍ତ ସୁନ୍ଦର
କାହିଁ ଉପମା ଦେବାକୁ ନାହିଁ ପଟାନ୍ତର ।
ମାଳାର ଜଗତି ପୁଣି କରିଅଛି ତହିଁ
ଆସ୍ଥାନର ତଳ ମେଲ ଦ୍ୱିକୋଣ ଅଟଇ ।
ରାଜାମାନଙ୍କର ପୁର ଯେଉଁରୂପ ବିଧି
ସେହି ଅନୁକ୍ରମେ ସବୁ ହୋଇଅଛି ସିଦ୍ଧି ।
ଆନନ୍ଦରେ ମହାମୁନି ପୁତ୍ରଙ୍କୁ ଗୃହିଲେ
ଏ ପୁରରେ ଏବେ ଆସି ରୁହରେ ବୋଇଲେ
ସେଠାବରୁ ବାହୁଡ଼ିଣ ଗଲେ ତିନି ଜଣ
ହାତୀ ଘୋଡ଼ା ଶାଳର ସେ ଦେଖିଲେ ନିର୍ମାଣ ।

ତତ୍ତ୍ୱ ସେତ୍ତ କଟକରୁ ବାହାର ହୋଇଲେ
ଦୁଲ ଦ୍ୱାର ମୁଦି ନିଜ ପୁରକୁ ଚଳିଲେ ।
ନିଜ ଭୁବନରେ ଯାଇ ହେଲେ ଉପସ୍ଥିତ
ଯେ ଯାହାର ନିତ୍ୟକର୍ମ କଲେ ସମାପତ ।
କଶ୍ୟପ କହନ୍ତି ଦିତି ନିକଟକୁ ଯାଇ
ପୁତ୍ରଙ୍କ କଟକ ଦେଖି ଯାଇଥିଲି ମୁହିଁ ।
କଟକ ଗଢ଼ି ଦେଇଛି ମାନ୍ଧା ବିଶ୍ୱକର୍ମା
ଆଗୋ ସଖି ମର୍ତ୍ତ୍ୟପୁରରେ ନାହିଁ ତା ଉପମା ।
କାଲି ବିଶ୍ୱକର୍ମାଙ୍କୁ ମୁଁ କହିଥିଲି ଯାଇ
ଦ୍ୱଦକ ମଧ୍ୟରେ ଗଲ ତାହାଙ୍କୁ ନିର୍ମାଇ ।
ଏବେ ତୋର ପୁତ୍ରମାନେ ରହନ୍ତୁ ତହିଁରେ
ଶୁଣି ହର୍ଷ ବିଷାଦିତ ହୋଇଲେ ମନରେ ।
ଏଥୁ ଅନନ୍ତରେ ଭୁନ୍ତେ ଶୁଣ ଦଣ୍ଡଧର
ଛନାଶ୍ୱର ଅନ୍ତେ ମୁନି କହଣ ବିସ୍ତର ।
ଶୁଭ ଅନୁକୂଳ ବୁଝି ପୁତ୍ରଙ୍କୁ କହିଲେ
କାଲି ରବିବାରେ ତହିଁ ରହଯା ବୋଇଲେ ।
ନିର୍ମାଣ ଗୃହରେ ବାବୁ ରହି ନ ଯୋଗାଏ
ଶୂନ୍ୟ ପଡ଼ିଥିଲେ ତହିଁ ଦୋଷ ଜାତ ହୁଏ
ମାସେ ଯେବେ ଶୂନ୍ୟ ହୋଇ ପଡ଼ିଥାଏ ଘର
ରୋଗ ଶୋକ ତହିଁ ପଡ଼େ ଏହା ନିର୍ଧାର
ପ୍ରଥମରେ ସେ ଗୃହଟି ଜୀବ ପାଇଥାଏ
ଶୂନ୍ୟ ହୋଇଲେ ନିର୍ଜୀବ ପୁଣି ହୋଇଯାଏ ।
ନାନାଦି ପ୍ରପଞ୍ଚ ଆତ୍ମା ପ୍ରବେଶଇ ତହିଁ
ସେ ଗୃହ ଶ୍ମଶାନ ପ୍ରାପ୍ତ ହୋଇ ପଡ଼ିଥାଇ
ଆପୁଡ ଭୁଟଇ ପୁଣି ଲକ୍ଷ୍ମୀ ନୋହେ ଥିର
ଏବେ ସ୍ୱଶଦାନ ହେଲା ରତ୍ନଲଣି ପୁର ।
ହିରଣ୍ୟ ବୋଇଲେ ପିତା ଆମ୍ଭ ସଙ୍ଗେ ଯିବ
ଆମ୍ଭଙ୍କୁ ରଖାଇ ଦେଇ ଆପଣ ଆସିବ ।
ତାହା ଶୁଣି ମୁନିବର ସନମତ କଲେ
କାଲି ପ୍ରଭାତରୁ ଯିବା ବୋଲିଣ କହିଲେ ।
ଶୁଣିକରି ଆନନ୍ଦିତ ହୋଇଲା ହିରଣ୍ୟ
ରାତ୍ର ପାହିଲା ଉଦୟ ହୋଇଲେ ତପନ ।
କାଶ୍ୟପ ନିତ୍ୟକର୍ମାଦି ସମସ୍ତ ସାରିଲେ
ଯିବାପାଇଁ ତତକ୍ଷଣେ ଉଦଯୋଗ କଲେ ।
ବେନି ବଧୂ ବେନି ପୁତ୍ର ଭାର୍ଯ୍ୟାସଙ୍ଗେ ଘେନି
ଶୁଭ ଅନୁକୂଳେ ଗଲେ କଟକକୁ ମୁନି ।

ଗୃହ ଉପକରଣାଦି ଘେନାଇ ଚଳନ୍ତି
ଆବର ଯେ ମାତାମାନେ ଯାଉଛନ୍ତି ଆସନ୍ତି ।
ବିମାତାଙ୍କୁ ନମସ୍କାର କରନ୍ତି ନନ୍ଦନ
ଦେହ ଆଉଁସି ମାତା ଏ ଗୁଣ୍ଡନ୍ତି ନନ୍ଦନ ।
ବୋଲନ୍ତି ରେ ପୁତ୍ର ତୁମ୍ଭେ ଟିକେ ଆସୁଥିବ
ଦୂରରେ ରହିଲ ବୋଲି ଭୁଲିଣ ନ ଯିବ ।
ତୁମ୍ଭଙ୍କୁ ଦେଖି ସନ୍ତୋଷ ହେଉଥିଲା ମନ
ଆଜଠାରୁ ଜାଣ ଗୃହ ହୋଇଗଲା ଶୂନ୍ୟ ।
କେମନ୍ତେ ରହିବୁ ବାପ ତୁମ୍ଭ ସ୍ନେହ ଛାଡ଼ି
ଗୃହକୁ ଗୃହିଲେ ଘର ପଡ଼ୁଥିବ ମାଡ଼ି ।
କାହାକୁ କ୍ଷୀର ଲବଣୀ ଆଣି ଭୁଞ୍ଜାଇବୁ
କାହା ମୁଖ ଧୋଇଦେଇ କୋଳେ ବସାଇବୁ
ଏଣୁ ତେଣୁ ଆସି କିଏ ଡାକିବ ମା ମା
କାହାକୁ ଦେଖି କହିବୁଁ ରେ କୁଳଚନ୍ଦ୍ରମା ।
ଏମନ୍ତ କହି କରନ୍ତି ଉଚ୍ଚରେ ରୋଦନ
ସେ ଶବଦ ଘାତେ କମ୍ପି ଉଠଇ ଗଗନ ।
ହିରଣ୍ୟ ବୋଇଲ କପିଁ । ଜନନୀ ସକଳେ
ସ୍ପନ୍ଦନ କରୁଅଛନ୍ତି କାହିଁକି ସକଳେ ।
କଲ୍ୟାଣ କରି ବିଦାୟ ଦେବା ଆଜ୍ଞା କର
ଆମ୍ଭେ ସର୍ବଦା ମାତା ଗୋ ତୁମ୍ଭର କିଙ୍କର ।
ପୁତ୍ର କେବେ କି ମାତାକୁ ଛାଡ଼ିଅଛି କାହିଁ
ଯେତେବେଳେ ଇଚ୍ଛା ଦେଖି ଆସିବୁ ଏଠାଇଁ
ଜନନୀମାନେ ଶୁଣିଣ ଆନନ୍ଦ ହୋଇଲେ
ମୁନି ବାହୁଡ଼ାନ୍ତେ ମାନେ ମାତା ଗୃହେ ଗଲେ
ସେହିକ୍ଷଣି ଷଡଜଣ କଟକେ ପ୍ରବେଶ-
ନାଗମାନେ ଦୂରୁ ଦେଖି ହୋଇଲେ ହରଷ ।
କବାଟ ଫିଟାଇ ସର୍ବ ଭିତରେ ପଶନ୍ତି
ହିରଣ୍ୟ ପୁରକୁ ବୋଲି ସର୍ବେ ଚଳିଯାନ୍ତି ।
ସେ ଗୃହ ଦେଖି ସକଳେ ହେଲେ ହରଷିତ
ମୁନିବର ହୋମ କୁଣ୍ଡ କଲେ ସ୍ଥାପିତ ।
ଅଗ୍ନି ସ୍ଥାପିଣ ଆହୁତି ସମର୍ପଣ କଲେ
ଅଗ୍ନିମନ୍ତ୍ରେ ଦେବାଦେବୀ ସମସ୍ତେ ତୋଷିଲେ ।
ପୃଥିବୀର ଦେବାଦେବୀ ନାମ ଧରି ଧରି
ଆହୁତି ଦେଲେ ବେଦରେ ଅଛି ଯେଉଁପରି ।
ହୋମ ସାରିଣ ଗୃହକୁ ଶୁଦ୍ଧପୂତ କଲେ
ପୂର୍ଣ୍ଣାହୁତି ଦେଇ ଅଗ୍ନି ଶାନ୍ତିକୁ ଭଜିଲେ ।

ସୁମନ୍ତ୍ରୁ ଶୁଣି ବୋଲନ୍ତି ତହୁଁ ମୁନିବର
ତୁମ୍ଭଙ୍କୁ ନିର୍ମାଇ ଦେଲା ସୁରମ୍ୟ ଏ ପୁର ।
ଧୁଇଁଭାଇ ଏ ପୁରରେ ବଳମିବ ରହି
ସାଧୁଙ୍କ ସଙ୍ଗରେ ହିଂସା ନ କରିବ କେହି ।
ନାରାୟଣଙ୍କ ସଙ୍ଗରେ ହୋଇବ ବଇରି
ପୂର୍ବରୁ କହିଛି ସବୁ ମନେ ଥିବ ଧରି ।
ତାହାଶୁଣି ବେନି ପୁଅ ଶିର ନୁଆଇଁଲେ
ବସ୍ତ୍ର ଅଳଙ୍କାର ରତ୍ନ ମୁନି ତାଙ୍କୁ ଦେଲେ ।
ଏ କଟକ ନାମ ହେଲା ରତ୍ନାବଳୀ ପୁର
ପୁଣ୍ୟେ ଛତିଶ କହନ୍ତି ବହୁତ ପ୍ରକାର ।
ରାଜ ବିଧିର ବିଧାନ କରିଲେ ଅନେକ
ପୁଣି ସନ୍ତୋଷ ହୋଇଲେ ସେ ବେନି ମୁନିକ ।
ବୋହୂଙ୍କୁ ଡକାଇ ଶାଶୁ ବନ୍ଧନ କରିଲେ
ପୁଣି ପୁତ୍ରଙ୍କ ନିକଟେ ପ୍ରବେଶ ହୋଇଲେ ।
ବୋଇଲେରେ ବାବୁମାନେ ଯାଉଅଛୁଁ ଆମ୍ଭେ
ଏଠାରେ ଥାଅ ସୁଖରେ ରାଜ୍ୟକର ତୁମ୍ଭେ ।
ନିତି ମୋତେ ଥରେ ହେଲେ ଦେଖା ଦେଉଥିବ
ଯେବେ ତୁମ୍ଭେମାନେ ମୋର ସୁକୁମାର ଧ୍ରୁବ
ତାହା ଶୁଣି ବେନିଭାଇ ବୋଲନ୍ତି ବଚନ
ମାତା ପିତା ଛାଡ଼ିବାକୁ ଆମ୍ଭେ କି ଭାଜନ ।
ନିତି ଥରେ ଆମ୍ଭେମାନେ ଗମନ କରିବୁ
ତୁମ୍ଭ ପାଦ ଦରଶନ କରି ଆସୁଥିବୁ ।
ବଡଭାଇ ତୁମ୍ଭଠାକୁ ଯିବାର ପ୍ରମାଣ
ତାଙ୍କ ସଙ୍ଗେ ମୁହିଁ ଯିବି ଏ ନିଶ୍ଚୟ ଜାଣ ।
ଶୁଣିକରି ମାତା ପିତା ଆନନ୍ଦ ହୋଇଲେ
କଟକ ବାହାରେ ଆସି ଉପସ୍ଥିତ ହେଲେ ।
ହିରଣ୍ୟ ହିରଣ୍ୟାକ୍ଷ ଯେ ପାଶ୍ଚେଟି ଆସନ୍ତି
ପୁଣି ଉଡି ପିତାମାତା ତାହାଙ୍କୁ କହନ୍ତି ।
ଦେବତା ବ୍ରାହ୍ମଣଙ୍କୁ ସଦା ସେବୁଥିବୁଁ
ସଂସାର ଜନ ମାନବ ଧ୍ୱଂସ ନ କରିବୁ ।
ଦୟାଧର୍ମ ସଦାକାଳେ ନ ଛାଡ଼ିବୁ ଜାଣ
ରାଜାମାନଙ୍କର ଧର୍ମ ସଦା ଏ ପ୍ରମାଣ ।
ଅନେକ ଧନ ଉତ୍ତମ ମୁଁ ଦେଇଅଛି ତୋତେ
ତାହା ଦେଇ ପ୍ରଜାକୁଳ ରଖୁଥିବୁ ନିତ୍ୟେ ।
ଦ୍ରବ୍ୟ ଲୋଭ ପାଇ ଯିବା ଆସିଥାନ୍ତି ସର୍ବେ
କୃପଣତା ଆଚରଣ ନ କରିବୁ କେବେ ।
ପଦାର୍ଥକୁ ଲୋଭକରି ନ ରଖିଲେ ପ୍ରଜା
ପତିତ ରହିବ ଜମି କାହୁଁ ହେବୁ ରାଜା ।
ମୁହିଁ ଅଛି ଯେତେବେଳେ ମୋ ଅଭାବ କାହିଁ
ଯେତେବେଳେ ଯାହା ଖୋଜା ହେଉଥିବ ତହିଁ
ଏମନ୍ତ ଶୁଣି ହିରଣ୍ୟ ସନମତ କଲ
ମାତାପିତାଙ୍କୁ ବିଦାୟ ଦେଇ ସୁତେ ବାହୁଡ଼ିଲ ।
କାଶ୍ୟପ ମହର୍ଷି ଦିତି ନିଜପୁରେ ଗଲେ
ଗୃହବାସୀଙ୍କୁ ସକଳ ବିଷୟ କହିଲେ ।
ଜୟ ଜୟ ଜଗନ୍ନାଥ ଅନାଥର ବନ୍ଧୁ
ଜୟ ଜୟ ଜଗନ୍ନାଥ କରୁଣାର ସିନ୍ଧୁ ।
ଜୟ ଜୟ ଜଗନ୍ନାଥ ଭକ୍ତ ଯାବେ ବଶ
ଜୟ ଜୟ ଜଗନ୍ନାଥ ପୁରେ ତା ମାନସ ।
ଜୟ ଜୟ ଜଗନ୍ନାଥ ଗରବ ବିଧ୍ୱଂସା
ଜୟ ଜୟ ଜଗନ୍ନାଥ ଉଗ୍ର କେଶୀ କଂସା ।
ଯେଉଁ ରାଜ୍ୟରେ ବିଜେ ପ୍ରଭୁ ଜଗନ୍ନାଥ
ସେ ରାଜ୍ୟ ମହିମା କିଏ କରିବ ବ୍ୟକତ ।
ହେ ପ୍ରଭୁ ସେ ଦେଶ ଜନ ପଶୁ ପକ୍ଷୀଙ୍କର
ପାଦରଜ ପଡୁଥାଉ ମସ୍ତକେ ମୋହର
ମୋହର ଅଶେଷ ପାପ ଦୂର ହୋଇଯିବ
ଦୟାନିଧି ତୁମ୍ଭ ନାମ ଶିର ବିକାଶିବ ।
ହେ ପ୍ରଭୁ ତୁମ୍ଭର ନାମ ରହୁ ମୋ ରସନା
ନାରାୟଣରେ ସର୍ବଦା ଏକାନ୍ତି କାମନା ।
ଏତିକ ମାତ୍ର ମୋଠାରେ ହୋଇଲେ ସଦୟ
ଜୀବନଧନକୁ ଲେଶେ ନ ରହିବ ଭୟ ।

—୦—

## ହିରଣ୍ୟ ହିରଣ୍ୟାକ୍ଷର ସୈନ୍ୟ-ପ୍ରାପ୍ତି ଏବଂ ଇନ୍ଦ୍ର ସଙ୍ଗେ ବିବାଦ ଅଳକାପୁର ଲୁଣ୍ଠନ ଓ ବରୁଣ-ଙ୍କର ଶରଣାପନ୍ନ

ମୁନିଙ୍କ ଚରଣ ଧରି ପଶ୍ଚାତ ନାରାୟଣ
ବୋଲନ୍ତି ଶୁଣାଉଅଛି ବରାହ ପୁରାଣ ।

ଗୁଣବଦନ ଶୁଣି ମୋର ପାପ ହୁଏ ଧ୍ୱଂସ
ଧନ୍ୟ ଶୁକମୁନି ତୁମ୍ଭ ମହିମା ଅଶେଷ ।
ରତ୍ନାବଳୀ କଟକରେ ସେହୁ ଦୁଇଭାଇ
ରହିଲେ ପିତା ମାତାଙ୍କ ସଙ୍ଗ ଛାଡ଼ି ଦେଇ ।
ତହିଁ ରହି କେଉଁ କଥା କଲେ ସେ ଆବର
ସେହି କଥା ଶୁଣିବାକୁ ଇଚ୍ଛା ଅଛି ମୋର ।
ତାହା ଶୁଣି ଶୁକ ମୁନି ବୋଲନ୍ତି ବଚନ
ଶୁଣିବାକୁ ଇଚ୍ଛା ଯେବେ ହୁଅ ସାବଧାନ ।
ନିତ ଯାଇ ହିରଣ୍ୟାକ୍ଷ କରେ ସ୍ତନ୍ୟପାନ
ତାହା ସଙ୍ଗରେ ହିରଣ୍ୟ କରଇ ଗମନ ।
ବାଳକ ରୂପରେ ଯାଇ ପ୍ରବେଶ ହୁଅଇ
କ୍ଷୀର ଦିଅନ୍ତି ଜନନୀ କୋଳରେ ବସାଇ ।
ଜନ୍ମକାଳେ ଯେଉଁ କଥା କହିଥିଲେ ଯତି
ତେଣୁକରି ସେ ଦନୁଜ କ୍ଷୀର ପିଏ ନିତି ।
ନିଜ କଟକକୁ ପୁଣି ବାହୁଡ଼ି ଆସନ୍ତି
ଘଡ଼ିକ ଭିତରେ ଗତାଗତ ବେନିଭାଇ ।
ନିଜ କଟକେ ବୁଲନ୍ତି ସେହୁ ବେନି ଭ୍ରାତ
କଟକ ସୀମାରେ ବହେ ନଦୀଏ ପବନ ।
ଉତ୍ତର ସମୁଦ୍ରେ ଯାଇ ସଙ୍ଗମ ହୁଅଇ
ହେମଗିରିକ ଫୁଟଇ ଉତ୍ତରେ ବହଇ ।
ଶୁଣିକରି ନରପତି ହୋଇଲେ ସନ୍ତୋଷ
ବୋଇଲେ ଏ କଥା ସବୁ ଜାଣିଲି ଅବଶ୍ୟ ।
ରଥ ଗଜ ପଦାତିକ କାହୁଁ ସେ ପାଇଲେ
ଏ କଥା ବିସ୍ତାରି ମୋତେ କହିଦିଅ ଭଲେ ।
କହନ୍ତି ଶ୍ରୀ ଶୁକମୁନି ଶୁଣ ହୋ ରାଜନ
ସେ ଦୁଇଭାଇ ରହନ୍ତେ ହୋଇଣ ସ୍ୱାଧୀନ ।
ଦୁଇଜନ ଛାଡ଼ି ଦେଇ ସେହୁ ବେନି ଭାଇ
ବାହାରିଲେ ଗଦାବର କାନ୍ଧରେ ପକାଇ ।
ଶଇଳଦେଶ ଦିଗକୁ ଗମନ କରିଲେ ।
ଅମୃଷ ଆସ୍ଥାନ ତଳେ ଯାଇଣ ମିଳିଲେ ।
ଦେଖିଣ ସେ ଦୈତ୍ୟରାଜ ହୋଇ ହୃଷ୍ଟମନ
ପାଦପୂଜା କଲା ତାଙ୍କ ଯେମନ୍ତେ ବିଧାନ ।
ଆସ୍ଥାନରେ ବସାଇଣ ପଚାରେ ଦଇତ
ପିତା ଘରେ ଅଛ କିବା ରହିଲ ଅନ୍ୟତ୍ର ।
ସେହିଦିନୁ ତୁମ୍ଭଙ୍କୁ ତ ଦେଖିବାକୁ ନାହିଁ
ଏବେ ଆସିଅଛ କିବା ବାଟ ବଣା ହୋଇ ।

ତାହାର ବଚନ ଶୁଣି ହିରଣ୍ୟ ହସିଲା
ଦୁଇଜନ ହେଲୁ ଭିନ୍ନ ରହିଛୁ ବୋଇଲା ।
ପିତାଙ୍କ ଆଜ୍ଞା ପ୍ରମାଣେ ବିଶ୍ୱକର୍ମା ଯାଇ
ଆମ୍ଭ ରହିବା କଟକ ଦେଲା ସେ ତୋଳାଇ ।
ପିତା ଆଣିଣ ଆମ୍ଭଙ୍କୁ ତହିଁ ରଖିଗଲେ
ରତ୍ନାବଳୀ ସେ କଟକ ନାମକୁ ବହିଲେ ।
ଉତ୍ତର ସମୁଦ୍ରଟରେ ଉତ୍ତର ଦିଗରେ
କ୍ରୌଞ୍ଚଦ୍ୱୀପ ନାମେ ସ୍ଥାନ ଅଛଇ ସେଠାରେ ।
ତହିଁରେ କଟକ ମୋର ହୋଇଛି ନିର୍ମାଣ
ସେ ସ୍ଥାନର ଶୋଭା ମନ କରଇ ହରଣ ।
ରତ୍ନମୟପୁରୀ କରି ରହିଛୁ ବଖାଣି
ସମ୍ଭାଳିବା ପାଇଁ କେହି ନାହିଁ ଜନପ୍ରାଣୀ ।
ଗଜ ପଦାତିକ ତୁମ୍ଭେ ଦେଲେ ତୋଷ ମନେ
କଟକେ ରହିବୁଁ ତେବେ ଅତି ସୁବିଧାନେ ।
ତୁମ୍ଭ ଭରସାରେ ସିନା ଆସିଲି ସେ ପୁର
ଯେମନ୍ତେ ମନକୁ ଆସେ କର ସେ ପ୍ରକାର ।
ଏମନ୍ତ ଶୁଣି ଅମୃଷ ଆନନ୍ଦ ହୋଇଲା
ଦଶକୋଟି ପଦାତିକ ରଥ ଗଜ ଦେଲା ।
ହିରଣ୍ୟକୁ କହେ ତହିଁ ପୁଣି ସେ ଦଇତ
ଯେମନ୍ତ ଦେବଗଣଙ୍କୁ ଜିଣିବାକୁ ହିତ ।
ସେହି କାର୍ଯ୍ୟରେ ତୁମ୍ଭଙ୍କୁ ଦେଉଅଛୁ ସୈନ୍ୟ
ହିରଣ୍ୟ କହେ ଏ କଥା ମୋହର ପ୍ରମାଣ ।
ସେଥିପାଇଁ କ୍ରୌଞ୍ଚଦେଶେ ରହିଲି ମୁଁ ଆସି
ଦେବତାଙ୍କୁ ସାଧିବା ସେ ବଡ଼ ଅବିଶ୍ୱାସୀ ।
ଦେବତା ମଧ୍ୟରେ ବୀର ଅଟେ ଚକ୍ରଧର
ଆଗେ ପଡ଼ିଲେ ବୁଝିବା କେତେ ବଳ ତାର
ଅମୃଷ ବୋଇଲା ପୁଣି କହିବି କଥାଏ
ଯେବେ ସମୁଦ୍ର ମନ୍ଥନ କଲେ ଦେବତାଏ ।
ଅମ୍ବୁନିଧି ରତ୍ନଯାକ ସବୁ ନେଇଛନ୍ତି
ସେ ରତ୍ନେ ପୃଥିବୀ ପୂର୍ଣ୍ଣକରି ସେ ପାରନ୍ତି ।
କୁବେର ପାଖେ ଗଚ୍ଛିତ ଅଛି ସେହି ସବୁ
ତାହାକୁ ଯେ ରୂପେ ହେଉ ଆଣି ଦେବ ବାବୁ ।
ହିରଣ୍ୟ ବୋଇଲା ତହିଁ କିଛି ନ ଥୋଇବି
ସ୍ୱର୍ଗ ମର୍ତ୍ତ୍ୟ ପାତାଳରୁ ସମସ୍ତ ଆଣିବି ।
ଦିନାକେତେ ଗଲେ ତାହା ବୁଝିବ ସମସ୍ତ
ଶୁଣିକରି ଆନନ୍ଦିତ ହୋଇଲା ଦଇତ ।

ସୈନ୍ୟ ବଳ ଘେନି ନିଜ ପୁରକୁ ଆସନ୍ତେ
ଅମୃଷ ପାଶ୍ଚେଟି ଆସେ କେତେକ ଦର୍ଯ୍ୟନ୍ତେ ।
ଦେଖି ହିରଣ୍ୟ ବୋଇଲ ଆହେ ବିପ୍ରବର
କଷ୍ଟ ପାଇ କମ୍ପା ଆସ ମଙ୍ଗରେ ମୋହର ।
ଯେଉଁ ଉପକାର ଆଜ କରିଅଛ ମୋତେ
ତାହା ସୁର୍ଣ୍ଣି ପାଶ୍ଵଜଳ ଆହା ଏ ଜଗତେ ।
ଅମୃଷ ବୋଇଲା ମୁହିଁ ବାହୁଡ଼ି ଯିବଇଁ
ତୁମ୍ଭେ କେଉଁ ରୂପେ ଯିବ ପାଦଗତି ହୋଇ
ଏହା କହି ହେମରଥ ଆଣି ଦେଲା ଦୁଇ
ଆନନ୍ଦେ ବସିଲେ ଯାଇ ତହିଁ ଦୁଇଭାଇ ।
ସେ ହେମ ରଥେ ସହସ୍ରେ ଯୋଗ୍ଯ ହୟବର
ପକ୍ଷୀରାଜ ପରାପ୍ରେକ ଗମନ ତାଙ୍କର ।
ଅମୃଷକୁ ବାହୁଡ଼ାନ୍ତେ ନ ଯାଇ ଅସୁର
ପୂର୍ବାପର ସବୁ କଥା କରଇ ପ୍ରଚାର ।
ତାହା ଶୁଣି ଦୁଇଭାଇ ପ୍ରତିଜ୍ଞାହିଁ କଲେ
ତୁମ୍ଭେ ଯା ବୋଲିବ ତାହା କରିବୁ ବୋଇଲେ
ଆଜଠାରୁ ତୁମ୍ଭେ ଆମ୍ଭେ ହୋଇଲୁ ଏକମ
କଟକେ ମିବାକୁ ହେଲ ଉନ୍ନର ବହୁତ ।
ତାହାଙ୍କ ବଚନ ଶୁଣି ଦୈତ୍ୟ ବାହୁଡ଼ିଲେ
ହିରଣ୍ୟ ହିରଣ୍ୟାକ୍ଷ ସେ କଟକେ ମିଳିଲେ ।
ରଥ ଗଜ ପଦାତିକ ବାଦ୍ୟ ଘୋର ନାଦ
ସେ ଶବଦେ ଚତୁର୍ଦ୍ଦିଗ ହୁଅଇ ତବଦ ।
ନଗର ଆସ୍ଥାନେ ସର୍ବେ ମିଳିଲେକ ଯାଇ
ଯାନ ବାହାନରୁ ତଳେ ପଡ଼ିଲେ ଓହ୍ଲାଇ ।
ସୈନ୍ୟମାନେ ଯାଇ ସୈନ୍ୟ ଆଗରେ ବୁଲିଲେ
ଯାହା ମନକୁ ଯେ ଗୃହ ଆଦର ରହିଲେ ।
ସେ ସୈନ୍ୟାଗାରେ ସକଳେ ରହିଲେ ସମ୍ଭାଳି
ମୁଖରାଦ ଶବଦରେ କମ୍ପୁଥାଏ ମହୀ ।
ରଥମାନଙ୍କୁ ରଖିଲେ ଉଚ୍ଚ ଅଟ୍ଟାଳିରେ
ହସ୍ତୀ ଘୋଡ଼ାକୁ ବାନ୍ଧିଲେ ସ୍ଵଭିନ୍ନ ସ୍ଥାନରେ ।
ଯାହା ମୂଳେ ଯେତେ ସୈନ୍ୟ ଥିଲାଆହୋଇ
ସେମାନଙ୍କୁ ଗଣିଗାଣି ସମ୍ଭାଳିଲେ ନେଇ ।
ହିରଣ୍ୟ ହୋଇଲା ରାଜା ଦୈତ୍ୟଙ୍କ ଉପରେ
ଧଳା କଳା ପାଟଛତ୍ର ଉଡ଼େ ତାର ଶିରେ ।
ମାଳ ଜଗତି ଉପରେ ବଜେଁ କଲା ଯାଇ
ସ୍ଵଭବରରେ ତାହାର ପ୍ରଭା ବଳାଇଲ ।

ବଧି ବଖାନ ନପ୍ପେମେ ହୁଅନ୍ତେ ରାଜନ
ପାନ ଫଣ୍ଡୀ କଲା ଦେଖି ଯୋଗ୍ୟଯୋଗ୍ୟ ଜନ ।
ଏହିରୂପେ ଏକବର୍ଷ ହୁଅନ୍ତେ ଅଗତ
ଯୌବନ ଦଶାରେ ଥିଲେ ଯେଉଁ ୨ ଦୈତ୍ୟ ।
ସେମାନେ ହିରଣ୍ୟାକ୍ଷର ମହିମା ଶୁଣିଲେ
ଆସି ତାହାର କଟକେ ପ୍ରବେଶ ହୋଇଲେ ।
ହିରଣ୍ୟ ରାଜାର ଏବେ ବଢ଼ାଏ ମହିମା
ପଦରକେ ଡାକ ପଡ଼େ ମହିମା ମହିମା ।
କହନ୍ତି ଶ୍ରୀ ଶୁକମୁନି ଶୁଣ ନୃପବର
ପିତାପାଶେ ଯେବେ ଥିଲେ ସେ ହେମ ଅସୁର ।
ଇନ୍ଦ୍ର ଯେବେ ଯାଇଥିଲେ କାଶ୍ୟପ ଗୃହକୁ
ସେକାଳେ ବାରବରଷ ହୋଇଥିଲା ସ୍ଵାଙ୍କୁ ।
ଦୁଇଭାଇ ବସିଥିଲେ ପିତାଙ୍କର ପାଶ
ଏହିକାଳେ ପ୍ରବେଶିଲେ ଆସିଣ ସୁରେଶ ।
ମାତା ପିତାଙ୍କ ଚରଣେ କଲେ ନମସ୍କାର
ଗଉରବେ ବସାଇଲେ ତାଙ୍କୁ ମୁନିବର ।
କଣ୍ଠେ କୁଣ୍ଡଳ ଜ୍ୟୋତି ଅଗ୍ନି ତେଜ ଜିଣି
ତହିଁରେ ଖଞ୍ଜା ହୋଇଛି ଅଷ୍ଟରତ୍ନ ମଣି ।
କାନ୍ତି ବାହୁଟି ପୁଣି ହସ୍ତରେ କଙ୍କଣ
ପିନ୍ଧିଛନ୍ତି ପୀତବାସ ପଇତା ଭୂଷଣ ।
ନୀଳ ଇନ୍ଦୀବର ପ୍ରାୟେ ଦିଶେ ଦେହବର୍ଣ୍ଣ
ଇନ୍ଦ୍ର ପଟାମ୍ବର ନାହିଁ ନାଗଫୁଣ ଭିନ୍ନ ।
ସୁଲକ୍ଷ ନାସିକା ଅଉ ମୁଖ ଅତି ଶୋଭା
ରାଜୀବ ଲୋଚନ ବପୁ ମଦନର ପ୍ରଭା ।
କରେ ବଜ୍ର ଧରିଛନ୍ତି ପ୍ରଶାନ୍ତ ମୂରତି
ଚନ୍ଦ୍ର କିରଣ ପରାପ୍ରେ ବିରାଜଇ ଜ୍ୟୋତି ।
ଅପ୍ସରା କନ୍ୟାମାନେ ଅଛନ୍ତି ସଙ୍ଗରେ
ଆବର ଗନ୍ଧର୍ବନ୍ତି ନାନାଦ ବେଶରେ ।
ମୃଦଙ୍ଗ ମର୍ଦ୍ଦଳ ଆଦି ବଜାନ୍ତି ହରଷେ
ନର୍ତ୍ତକୀ ନୃତ୍ୟ କରନ୍ତି ତାଙ୍କ ପାଶେ ପାଶେ ।
ଉଡ଼ୁଛନ୍ତି ଚାମରରେ ଗଗନ ଆଚ୍ଛାଦି
କାଶ୍ୟପ ଭୁବନେ ସୂର୍ଯ୍ୟ ନ ପାରଇ ଭେଦି ।
ପାଦେ ବନ୍ଦି ଇନ୍ଦ୍ର ପିତା ପାଶରେ ବସନ୍ତି
ହିରଣ୍ୟ ହିରଣ୍ୟାକ୍ଷକୁ କାଶ୍ୟପ ବୋଲନ୍ତି ।
ସ୍ଵାଙ୍କୁ ଯାଇ ନମସ୍କାର କରରେ ତୁମର
ହିରଣ୍ୟ ବୋଇଲା କିସ ହୋଇବେ ଆମ୍ଭର

ପିତା ବୋଇଲେ ଏ ଇନ୍ଦ୍ର ତୁମ୍ଭ ଜ୍ୟେଷ୍ଠଭାଇ
ଆମ୍ଭ ପୁତ୍ର ଅଦିତିଙ୍କ ଗର୍ଭୁ ଜାତ ଏହି ।
ଶୁଣି ଦୁଇଭାଇ ତହୁଁ ନମସ୍କାର କଲେ
କଲ୍ୟାଣ କରିଣ ଇନ୍ଦ୍ର କୋଳେ ବସାଇଲେ ।
ଦେଖା ଦରଶନ ତାଙ୍କୁ ଦେଇ ସୁରପତି
ମେଲାଣି ମାଗିଣ ନିଜ ପୁରକୁ ଗମନ୍ତି ।
ଯିବା ବେଳରେ ହିରଣ୍ୟ ତାକୁ ଚାହିଁଥିଲା
ଏଡ଼େ ଶିରୀ ବେଗକରେ ମନେ ବିଚାରିଲା ।
ଇନ୍ଦ୍ରପଦ ସମାନରେ କେହି ନୁହେ ସରି
ଏହି କଥାକୁ ମନରେ ସଦାଥାଏ ଧରି ।
ଏବେତ ହୋଇଲେ ମଧ୍ୟ କ୍ରୌଞ୍ଚ ଦ୍ୱୀପେଶ୍ୱର
ସେହିକଥା ତାର ମନୁ ନୋହୁଛି ଅନ୍ତର ।
ଏହିରୂପେ ଦଶବର୍ଷ ଚଳିଗଲା
ପ୍ରତିକାର ନ ପାଇ ସେ ନୀରବରେ ଥିଲା ।
ଏଥିଅନ୍ତେ ଶୁଣ ତୁମ୍ଭେ ଆହେ ନୃପରାଣ
ପୁଣି ଯାହା ଯାହା ହେଲା ତାର ବିବରଣ ।
ଦିନେ କାଶ୍ୟପ ବସିଣ ବିଚାରିଲେ ମନେ
ଦେଖିବା କେମନ୍ତେ ଅଛନ୍ତି ମୋର ପୁତ୍ରମାନେ
ଏତେକ ଭାବି ହିରଣ୍ୟ ଭବନେ ଚଳନ୍ତି
ଦ୍ୱାର ରକ୍ଷକକୁ ଚାହିଁ ବଚନ ବୋଲନ୍ତି ।
ଶୁଣ ଆରେ ଦ୍ୱାରପାଳ ଏହିକ୍ଷଣି ଯିବୁ
କାଶ୍ୟପ ଆସିଅଛନ୍ତି ରାଜାଙ୍କୁ କହିବୁ ।
ମୁନିଙ୍କ ବଚନେ ଦ୍ୱାରୀ ବେଗେ ଚଳିଗଲା
ନମସ୍କାର କରି ରାଜା ଆଗରେ କହିଲା ।
ଶୁଣ ଶୁଣ ମହାରାଜା ଦୈତ୍ୟ ଅଧିପତି
ସିଂହଦ୍ୱାରେ ତବ ପିତା ଉଭା ହୋଇଛନ୍ତି ।
ଦ୍ୱାରପାଳ ମୁଖରୁ ସେ ଏହି ରୂପେ ଶୁଣି
ତତକ୍ଷଣେ ଆସ୍ଥାନ ତେଜି ଉଠେ ବୀରମଣି ।
ସିଂହଦ୍ୱାର ଦେଶେ ଯାଇ ପ୍ରବେଶ ହୋଇଲା
ପିତାଙ୍କ ଚରଣ ତଳେ ପ୍ରଣିପାତ କଲା ।
ନିଜ ସିଂହାସନେ ତାଙ୍କୁ ବସାଇଲା ନେଇ
କାଶ୍ୟପ ସନ୍ତୁଷ୍ଟ ହେଲେ ରଥ ସୈନ୍ୟ ଚାହିଁ ।
ପଚାରନ୍ତି ଏତେ ସୈନ୍ୟ କାହୁଁ ତୁ ପାଇଲୁ
ହିରଣ୍ୟ ବୋଲେ ଅମୃତ ଦେଇ ଯାଇଥିଲୁଁ ।
ତୁମ୍ଭର କଲ୍ୟାଣେ ମୋତେ ମିଳେ ଏତେ ସୈନ୍ୟ
ଶୁଣି ଆନନ୍ଦିତ ହୋଇ କଲେ ଧନ୍ୟ ଧନ୍ୟ ।

ଘଡ଼ିଏକ ବସି ମୁନି ସେଠାରୁ ଉଠିଲେ
ହିରଣ୍ୟ ହିରଣ୍ୟାକ୍ଷ ଯେ ପଛେ ଗୋଡ଼ାଇଲେ
ଦେଖି ବାହୁଡ଼ାଇ ଦେଲେ ତାଙ୍କୁ ମୁନିବର
ବୋଇଲେ ମୁଁ ଆସିଥିଲି ଦେଖି ତୋ ସମ୍ଭାର
ରଥ ଗଜ ପଦାତିକ କଳଣିକ ବାହିଁ
ଦେଖିଲିଣି ସବୁ ଏବେ ଯାଉଅଛି ମୁହିଁ ।
ଆନନ୍ଦରେ ଦୁଇଭାଇ ନମସ୍କାର କଲେ
ନିଜ କଟକକୁ ପୁଣି ବାହୁଡ଼ି ଆଇଲେ ।
କାଶ୍ୟପ ପ୍ରବେଶ ହେଲେ ଆପଣାର ପୁରେ
ସମସ୍ତ କହିଲେ ଯାଇ ଦିତିଙ୍କ ଆଗରେ ।
ଶୁଣିକରି ଦିତି ଦେବୀ ତୋଷକଲେ ମନ
ଏଥିଅନନ୍ତରେ ଶୁଣ ଉତ୍ତରା ନନ୍ଦନ ।
ହିରଣ୍ୟ କଶିପୁଙ୍କର ତେଜ ମହାଘୋର
ଅସୁରମାନଙ୍କୁ ଘେନି କରଇ ବିଚାର ।
ଦେବତାଏ ତ ଆମ୍ଭର ଅଟନ୍ତି ବଇରୀ
ପୂର୍ବେ ମୋ ଭାଇମାନଙ୍କୁ ଅଛନ୍ତି ସେ ମାରି
ଭାଇ ବେଳ ତାହାଙ୍କର ଉପ୍ରୋଧ ନୋହିଲା
ଆମ୍ଭେ କମ୍ପା ଉପରୋଧ କରିବୁଁ ବୋଇଲା ।
ସାଜ ସମସ୍ତେ ଏବେ ସ୍ୱର୍ଗ କରି ଜୁର
ଦେବତାମାନଙ୍କୁ ତହିଁ କରିବା ସଂହାର ।
ଭାଇ ବଇରୀମାନଙ୍କୁ ପକାଇବି ମାରି
ମୁହିଁ ଏବେ ସ୍ୱର୍ଗପୁରେ ହେବି ଅଧିକାରୀ ।
ହିରଣ୍ୟାକ୍ଷ କରୁ ପୁର ରକ୍ଷଣ ବେକ୍ଷଣେ
ମୁହିଁ ଏବେ ସ୍ୱର୍ଗେ ଯାଇ ନେବି ଇନ୍ଦ୍ରପଣ ।
ହିରଣ୍ୟ ବଚନେ ଦୈତ୍ୟ ଆନନ୍ଦ ହୋଇଲେ
ଅମୃତ ଦୈତ୍ୟ ନିକଟେ ସ୍ୱର ବରଗିଲେ ।
ବାରତା ପ୍ରବେଶମାତ୍ରେ ଅଇଲା ଅସୁର
ତିନିପଦ୍ମ ସୈନ୍ୟବଳ ଘେନାଇ ସଙ୍ଗର ।
ହିରଣ୍ୟ ନିକଟେ ଆସି ହୋଇଲା ପ୍ରବେଶ
ଦେଖି ଆନନ୍ଦିତ ହେଲା କାଶ୍ୟପଙ୍କ ଶିଷ୍ୟ ।
କୋଳାଗ୍ରତ କରି ନେଇ ଆସନେ ବସାଇ
କୁଶଳ ବାରତାମାନ ତାହାକୁ ପୁଚ୍ଛଇ ।
ପୁଣି କହେ ଇନ୍ଦ୍ର ପୁରେ ବାହିବାକ ସୈନ୍ୟ
ନେଣ୍ଟୁକରି ତୁମ୍ଭଙ୍କୁ ମୁଁ ଆଣିଲି ରାଜନ ।
ଶୁଣି ସେ ଅମୃତ ଦୈତ୍ୟ ଆନନ୍ଦ ହୋଇଲା
ମାଜ ସାଜ ସୈନ୍ୟ ବୋଲି ଡାକ ପକାଇଲା ।

ଅମୃତବାକ୍ୟେ ହିରଣ୍ୟ କରିଲା ଆଦେଶ
କୋଟି କୋଟି ସୈନ୍ୟ ଆସି ହୋଇଲେ ପ୍ରବେଶ ।
ବାଜେ ଟମକ ମର୍ଦ୍ଦଳ ଜଡ଼ଇ ନିଶାଣ
ସଜ ହୋଇଣ ଅଇଲେ ସବୁ ଦୈତ୍ୟଗଣ ।
ସୈନ୍ୟ ଆସିବାର ଦେଖି ନୃପତି ହିରଣ୍ୟ
ବାହାରିଲା ବୀରବେଶେ ହେବାକୁ ଭୂଷଣ ।
ମସ୍ତକେ ମୁକୁଟ ପୁଣି କର୍ଣ୍ଣରେ କୁଣ୍ଡଳ
ଗଳେ ନାନାରତ୍ନ ହାର ଦିଶଇ ସୁଢଳ ।
ବାହୁରେ ବାହୁଟି ହସ୍ତେ ଭରଇ ବଳୟ
ଦଶ ଅଙ୍ଗୁଳିର ମୁଦି ତେଜ ଅତିଶୟ ।
କଟୀରେ କଟିକାଛେଣି କଟୀଭିଡ଼ା ଚର୍ମ
ଛନ୍ଦି ଝୁଲେ କରବାଳ ଆବରଣି ଚର୍ମ ।
ବଳାଗଣ୍ଠିରେ ବଳୟ ପାଦରେ ପାଦୁକା
ନାନାରତ୍ନ ଜଡ଼ ଛନ୍ଦି ଶୋଭା ଦିଶେ ଏକା ।
ପଛେ ପୃଷ୍ଠେ ଦୁଇକନ୍ଧେ ଦୁଇଗୋଟି ତୂଣ
ଦକ୍ଷ ହସ୍ତେ ଗଦାବର ବାମରେ କମାଣ ।
ନଶ ହଳକ ତାହାର ଉଡ଼େ ଫରଫର
ଯୁବା କାମରୂପୀ ଦିଶେ କନ୍ଦର୍ପ ଆକାର
ରଥମଣ୍ଡଣି ହୋଇଛି ମୁକ୍ତା ମାଳମାନ
ନାସା ବର୍ଣ୍ଣ ବସନରେ ଦିଶଇ ଶୋଭନ ।
ରଥ ଉପରେ ଶିଗଳ ଉଡ଼େ ଫରହର
ଦୁଇରଥରେ ସହସ୍ର ଯୋଖ୍ୟ ହୟବର ।
ନାନା ଅସ୍ତ୍ରମାନଙ୍କରେ ରଥ ଅଟଇ ପୂର୍ଣ୍ଣ
ସୂର୍ଯ୍ୟତେଜେ ଦିଶଇ ସେ ଯେସନ ସୁବର୍ଣ୍ଣ ।
ଛନ୍ଦିରେ ବସିଲେ ଯାଇ କାଶ୍ୟପନନ୍ଦନ
ମହା ବଳୀୟାର ଗର୍ବ ଗମ୍ଭୀର ବଦନେ ।
ଅମୃତର ରଥ ସଜ ହେଲା ଏହିପରି
ରଥେ ବସିଲା ଅସୁର କରେ ଧନୁ ଧରି ।
କଟକରୁ ସେହିକ୍ଷଣି ହୋଇଲେ ବାହାର
ଉତ୍ତର ଅଭିମୁଖରେ ଚଳନ୍ତି ଅସୁର ।
ସ୍ୱର୍ଗପୁରରେ ପ୍ରବେଶ ହୋଇଲେ ସେ ଯାଇ
ନିଦଶ ଦେବତାମାନେ ଦେଖୁଛନ୍ତି ଥାଇ ।
କେ ବୋଲନ୍ତି ଦୁଇଭାଇ ସ୍ୱର୍ଗକୁ ଆସନ୍ତି
କେ ବୋଲଇ କାଶ୍ୟପଙ୍କ ନିକଟେ ଚଳନ୍ତି ।
କେ ବୋଲଇ ତୁମ୍ଭେମାନେ ହୋଇଲ କି ବାଇ
ଏତେ ସୈନ୍ୟ ଘେନ ପିତା ପଟେକ ଗମଇଁ

ଯେତେଥର ଆସିଛନ୍ତି ଏଠାକୁ ହି ଭାଇ
ଏତେ ସମ୍ଭବିତ ହିନେ ହେଲେ ଦେଖାନାହିଁ ।
ଆସୁଛନ୍ତି ନଷ୍ଟ ସ୍ୱର୍ଗ କରିବାକୁ ପୂର
ଦେଖାନାହିଁ ଗୁଡ଼ିଲେଣି କଶ୍ୟପର ପୁର ।
ଇନ୍ଦ୍ର ଦେବତା ବୋଇଲେ ଜାଣିବା ଏକ୍ଷଣି
ଦ୍ୱନ୍ଦ୍ୱକୁ ସେ ଆସୁଥିଲେ କରିବେ ମାରେଣି ।
ନୋହିଲେ ସୁଧର୍ମା ସଭା ସ୍ଥାନକୁ ଆସନ୍ତି
ଏ ଦୁଇକଥାରୁ ଏକ ନିଷ୍ଟୟ ବୁଝନ୍ତି ।
ଇନ୍ଦ୍ରାଦିତେ ଭୟ ଜାତ ହୋଇଲା ଅପାର
ମୋହରଠାକୁ ନ ପୁଣ ଆସନ୍ତି ପାମର ।
ଏମନ୍ତ କାଳେ ହିରଣ୍ୟକଶିପୁ ଉଭୟେ
ସ୍ୱର୍ଗପୁରେ ଉପଦ୍ରବ କରନ୍ତି ନିର୍ଭୟେ ।
ମେଡ଼ ମଣ୍ଡପ ଦେଉଳ ଇତ୍ୟାଦି ଭାଙ୍ଗନ୍ତି
ଗନ୍ଧର୍ବଙ୍କୁ ଭେଟିଲେ ସେ ପ୍ରାଣରେ ମାରନ୍ତି ।
କାହାକୁ ବାନ୍ଧି ପକାଇ ଦିଅନ୍ତି ଗଡ଼ାଇ
କାହାକୁ ବିବିଧମାଡ଼ ମାରନ୍ତି ନଠାଇ ।
ପଳାନ୍ତି ଦେବତାଗଣ ମହାଭୟ ପାଇ
ଇନ୍ଦ୍ରଙ୍କ ଆଗେ ଡଗର ଯାଇଣ କହଇ ।
ଭୟେ ଥର ଥର ହୋଇ କମ୍ପଇ ଶରୀର
କରଯୋଡ଼ ଜଣାଏ ସେ ଶୁଣ ସୁରେଶ୍ୱର ।
ଏଠାରେ ବସିଛ ଦେବ ନିଶ୍ଚିନ୍ତ ଭାବରେ
ସ୍ୱର୍ଗ ଚୋର ପୁର କଲେ ଆସିଣ ଅସୁରେ ।
ଯେ କେହି ମୁଖେ ପଡ଼ନ୍ତି କରୁଛନ୍ତି ହତ
ଶୁଣି ତତକ୍ଷଣେ ଉଠିଲେ ଦେବ ପୁରୁହୂତ ।
ଐରାବତ ଉପରେ ସେ ଆରୋହିଲେ ଯାଇଁ
ବଜ୍ର ଅଜଗବଧନୁ କରେ ଛନ୍ଦି ବନ୍ଧି ।
ଡାକନ୍ତି ସୁର ଈଶ୍ୱର ଧାଅଁ ହେ ଗନ୍ଧର୍ବେ
ସ୍ୱର୍ଗପୁର ପୂରିକଲେ ଆସିଣ ଦାନବେ ।
ଶୁଣି ଧାଇଁନ୍ତି ଗନ୍ଧର୍ବେ ଘୋର ରବ କରି
ବଜାଇଣ ବୀର ତୂର ନାନା ଅସ୍ତ୍ର ଧରି ।
ଇନ୍ଦ୍ର ସଙ୍ଗେ ଦୈତ୍ୟ ସୈନ୍ୟ ପଡ଼ିଲେ ଧସାଇ
ଦୁଇ ବଳର ସଂଗ୍ରାମ ଲାଗିଲା ବୁହାଇ ।
ଛେଳ ଚନ୍ଦ କୁନ୍ତ ଗଦା ପ୍ରହାରନ୍ତି ଆଣି
ଯେସନ୍ତି ମାଘର ଘନ ବୃଷ୍ଟି ଜଳ ଜାଣି ।
ବିବିଧ ବଜନ୍ତ୍ରାକରେ ବାଜେ ବୀର ତୂର
ସେହି ଶବ୍ଦରେ ପୂର୍ଣ୍ଣ ହେଲା ସ୍ୱର୍ଗପୁର ।

ମାର ମାର ହାଣ ହାଣ ଶୁଭେ ମହାଘୋରେ
ସ୍ୱର୍ଗପୁର କମ୍ପମାନ ହୁଏ ପାଦଭରେ ।
ଦେବ ଦାନବେ ହୁଅନ୍ତି ତହିଁ ମହାରଣ
ଘୋରଯୁଦ୍ଧେ ଦୁଇ ଦଳେ ଯାନ୍ତି ପ୍ରେତପୁରୀ ।
ଐରାବତ ଚଢ଼ି ଇନ୍ଦ୍ର ବଜ୍ର ଧରି କରେ
ଅନେକ ଅସୁର ସୈନ୍ୟ ମାରନ୍ତି କୋପରେ ।
ଭଙ୍ଗ ପଳାଇଲେ ଦୈତ୍ୟ ଇନ୍ଦ୍ର ଯୁଦ୍ଧ ଦେଖି
ଦୁଇଭାଇ ଓଗାଳିଲେ ଅନ୍ୟଙ୍କୁ ଉପେକ୍ଷି ।
ଇନ୍ଦ୍ର ଦେବତା ବୋଲନ୍ତି ଆଜ ଯିବ କାହିଁ
ନଷ୍ଟେ ମୋର ହସ୍ତେ ମଲ ତୁମ୍ଭେ ବେନଭାଇ ।
ତାଙ୍କ ବଚନେ ହିରଣ୍ୟ ବୋଲେ ହସି ଦେଇ
ସମୁଦ୍ର ମନ୍ଥନ ଦିନ ଆଜ ନୁହେଁ ଭାଇ ।
ଦନ୍ତ ଧୂମ୍ରଙ୍କୁ କରିଛ ପ୍ରାଣରେ ବିନାଶ
ଆଜ ଭାଇ ଛଡ଼ାଇବ ଜୀବନର ଆଶ ।
ଯେଉଁ ନାଗପୂଣ ତୋତେ ହୋଇଅଛୁ ସାହା
ତାଙ୍କୁ ନ ଆଣିଲୁ କାହିଁ ଅଛୁ ଚଳବାହା ।
ହି ଦଣ ଦେବଙ୍କୁ ଆଜ ରକ୍ଷିବ କି ଆଜ
ଏତେ ବୋଲି ଶର ଛନ୍ଦେ ସେ ଦଇତ ଗହ୍ୱ ।
ସହସ୍ରେ ନାରାଚ ନେଇ ପେଷେ ମହାବଳ
ବାବଲ ଶରେ ଛେଦିଲେ ତାହା ଆଖଣ୍ଡଳ
କୋଟି କୋଟି ଲକ୍ଷ ଲକ୍ଷ ପେଷିଲେ ସେ ବାଣ
ମେରୁଶୃଙ୍ଗେ ଯେଉଁ ରୂପେ ବର୍ଷେ ମେଘ ଦ୍ରୋଣ
ବେଳକୁ ବେଳ ବଢ଼ିଲା ଯୁଦ୍ଧ ଘୋର ରଣ
ତାହା ଦେଖି କୋପ କଲେ ଦେବ ସୁରଗଣ ।
ଐରାବତ ଉପରୁ ସେ ପଡ଼ିଲେକ ଡେଇଁ
ବଜ୍ର ଧରି ଦଉଡ଼ିଲେ କୋପମୂର୍ତ୍ତି ହୋଇ ।
ହିରଣ୍ୟ ଉପରେ ତାହା କରନ୍ତେ ଆଘାତ
ରଥ ଗୁଣ୍ଡ ଆଡ଼ ହେଲା କଶ୍ୟପଙ୍କ ସୁତ ।
ହୁହେଁ ସହୋଦର କାହୁଁ ବଇମାଣୀ ଭାଇ
ସମର ଭୂମିରେ କାର ଉପରୋଧ ନାହିଁ ।
ଦୁଇଭାଇ ରଣମୁଖେ ଅତି ବଳବନ୍ତା
କାଶ୍ୟପ ବରେ ହୁଅନ୍ତି ସେ ଅମରମତା ।
ଆଉ ଥରେ ଇନ୍ଦ୍ର ବଜ୍ର ପ୍ରହାରିଲେ ନେଇ
ହାତ ବଢ଼ାଇ ହିରଣ୍ୟ ଧଇଲା ନଠାଇ ।
ହିରଣ୍ୟ ସେ ବଜ୍ର ଯୁଦ୍ଧ ନ ହେଲାକ ଗୁଣ୍ଡ
ହୁଙ୍କାର ନାଦରେ ଇନ୍ଦ୍ର ତା ନେଲେ ଉଛୁଡ଼ ।

କୋପେ ଧନୁ ଫିଙ୍ଗି ଦେଲା କଶ୍ୟପ କୁମର
ଇନ୍ଦ୍ର ବଜ୍ରେ ରଥ ତାର ହୋଇଥିଲା ଚୂର ।
ଭଗ୍ନ ରଥରୁ ଗଦାକୁ ଧଇଲା ସେ ଯାଇ
ଅନ୍ତରୀକ୍ଷେ ବୁଲାଇଲା ବିକ୍ରମ ଦେଖାଇ ।
ଗଦା ବୁଲନ୍ତେ ପବନ ଯୁଦ୍ଧ ହେଲା ଯାତ
ବିଦ୍ୟାଧର ଗନ୍ଧର୍ବାଦି ଉଡ଼ିଲେ ସମସ୍ତ ।
ସାଠି ଯୋଜନ ଦୂରରେ ପଡ଼ିଲେ ସେ ଯାଇ
ଚହୁଁ ରଣ ଛାଡ଼ି ସର୍ବେ ଗଲେକ ପଳାଇ ।
ଇନ୍ଦ୍ର ଉପରକୁ ଗଦା କରନ୍ତେ ପ୍ରହାର
ଇନ୍ଦ୍ର ମଧ୍ୟ ପଳାଇଲେ ତେଜିଣ ସମର ।
ଗୋଡ଼ାଇଲେ ଖଣ୍ଡେ ଦୂର ଯାଏ ଦୁଇଭାଇ
ଲେଉଟି ନିଜ ସୈନ୍ୟରେ ପ୍ରବେଶିଲେ ଯାଇ
ଇନ୍ଦ୍ର ତାଙ୍କ ଭୁବନରେ ପ୍ରବେଶ ହୋଇଲେ
ଶଚୀଙ୍କୁ ଘେନିଣ ମେରୁ ମେଖଳେ ଲୁଚିଲେ ।
ଏଥୁ ଅନନ୍ତରେ ଶୁଣ କାଶ୍ୟପ କୁମର
ଯାଇଣ ପଶିଲେ ସର୍ବେ ଇନ୍ଦ୍ର ଭୁବନର ।
ନାନାଦି ପଦାର୍ଥ ଦେଖି ସର୍ବେ ଯୁର କଲେ
ଇନ୍ଦ୍ର ଭୁବନର ଶୋଭା ଜନ୍ମିବ କେ ଭଲେ ।
ସେ ପଦାର୍ଥ ଦୈତ୍ୟମାନେ ଯୁର କରିଦ୍ୟନ୍ତି
ପୁର ଦେଖି ଦୁଇଭାଇ ମୋହିତ ହୁଅନ୍ତି ।
ଆବର ଯୁର କରିଲେ ଦେବତାଙ୍କ ଘର
ମୂର୍ଖ ସା ପଡ଼ଇ ତାକୁ କଲେ ନାରଖାର ।
ଭୟ ପାଇଣ ଦେବତା ଗଲେକ ପଳାଇ
ନନ୍ଦନ ବନରେ ଲୁଚି ରହିଲେ ସେ ଯାଇ ।
ସ୍ୱର୍ଗ ପୁର କରି ଇନ୍ଦ୍ର ଭୁବନେ ରହିଲେ
ସବୁ ଦ୍ରବ୍ୟ କଟକକୁ ବହି ଘେନିଗଲେ ।
ପୁଣି କୁବେରପୁରକୁ କରନ୍ତି ଗମନ ।
ବାଉଁଶପାଇ ଧଳାଇଲେ ସର୍ବ ନାଗଗଣ ।
କୁବେର ପୁରେ ଅଜାଣ୍ଟେ ମିଳିଲେ ସେ ଯାଇ
ଦେଖିଲେ ପୁରେ ତାହାର ଜଣେ କେହି ନାହିଁ ।
କଟକକୁ ସୁଖ ଦେଇ ଭଣ୍ଡାରେ ପଶିଲେ
ସମୁଦ୍ର ମନ୍ଥନ ଦ୍ରବ୍ୟ ସମସ୍ତ ଦେଖିଲେ ।
ଅଷ୍ଟନିଧି ପଞ୍ଚରତ୍ନ ଆଦି ଦ୍ରବ୍ୟମାନ
ହରଷେ ଆଣନ୍ତି ସବୁ ଯତ୍ନେ ଧାଭୁଧାନ ।
କୁବେର ଜାଣି ବରୁଣ ଭୁବନକୁ ଯାନ୍ତି
ଅସୁର ସୈନ୍ୟ ସେଠାରେ ପ୍ରବେଶ ହୁଅନ୍ତି ।

ବିବିଧ ପ୍ରକାରେ ବାଜେ ରଣ ଘୋର ତୂର
ଶୁଣିକରି କମ୍ପମାନ ହେଲେ ଜଳେଶ୍ୱର ।
ସହସ୍ର ଉଲ୍ଲୋକ ରଥ ଚଢ଼ିଲେ ସେ ଯାଇ
ଜଳଚରଙ୍କ ମସ୍ତକ ସେନା ଲଇଣ ଧାଇଁ ।
କଟକ ଉଜାଡ଼ି କରି ଦଳନ୍ତେ ଶ୍ରୀଅନନ୍ତ
ରହ ବୋଲି ଡାକିଲେ ଯାଇ ଜଳପତି ।
ଧନୁ ଧରି ପେଷନ୍ତି ସେ ବାଛୁ ତୀକ୍ଷ୍ଣ ଶର
ନାରାଚକେ ଛାଡ଼ୁଥାନ୍ତି ଶତେକ ଅସୁର ।
ହିରଣ୍ୟ ହିରଣ୍ୟାକ୍ଷ ତା ଦେଖି ଗଲେ ଧାଇଁ
ସୈନ୍ୟଙ୍କୁ ପଛ କରିଣ ଆଗ ହେଲେ ଯାଇ ।
ଦଶ ବିଂଶ ବାଣ ବର୍ଷି କରନ୍ତି ପ୍ରହାର
ପୁନଃ ପୁନଃ ନିବାରନ୍ତି ତାହା ଜଳେଶ୍ୱର ।
ତାହା ଦେଖିଣ ହିରଣ୍ୟ କୋପେ ଗୁରୁତର
ଗଦା ଘେନିଣ ଧାଇଁଲେ ପବନଠୁଁ ଖର ।
ବୁଲାଇ ପିଟିବା ପାଇଁ ହୁଅନ୍ତେ ଉଦ୍ୟତ
ଜଳଚରଙ୍କ ମନ୍ତ୍ରୀ ଯେ ଓଗାଳିଲେ ତ୍ୱରିତ ।
ରହ ରହ ଗଦା ତୁମ୍ଭ ନ ପିଟ ହିରଣ୍ୟ
ଏ ତୋହର ଜ୍ୟେଷ୍ଠଭାଇ କରୁଛୁ ମାରଣ ।
ଏହାକୁ ମାରିଲେ ତୋର ହେବ କେଉଁ ଯଶ
ଶୁଣି ସ୍ଥକିତ ହୋଇଲେ ହିରଣ୍ୟ ରାକ୍ଷସ ।
ବରୁଣଙ୍କୁ ବୋଲେ ତେବେ ହୋମଦଣ୍ଡ ଦିଅ
ନିର୍ଭୟ ହୋଇଣ ଏହି ଭୁବନରେ ଥାଅ ।
ନ ଦେଲେ ନିଶ୍ଚୟ ତୋର ପ୍ରାଣ ନେବି ମୁହିଁ
ଘୁମୁରେ ପଡ଼ିଛୁ ଆଜ ଯିବୁ ଅବା କାହିଁ
ବରୁଣ ବୋଇଲେ ତାହା ଆଣିଦେବି ତୋତେ
ମୁହିଁ ଅଟଇ ଜ୍ୟେଷ୍ଠଭାଇ ମାରିବୁ କେମନ୍ତେ ।
ବରୁଣ ବଚନ ଶୁଣି ଶାନ୍ତ ହେଲା ବୀର
ବୋଲେ ଶୀଘ୍ର ଆଣିଦିଅ ଭାଇ ଜଳେଶ୍ୱର ।
ତତକ୍ଷଣେ କନକଦଣ୍ଡ ଆଣିକରି ଦେଲେ
ହିରଣ୍ୟ ହିରଣ୍ୟାକ୍ଷ ତା ଘେନି ବାହୁଡ଼ିଲେ ।
ବରୁଣ ତାଙ୍କ ପୁରରେ ହେଲେ ପରବେଶ
ପ୍ରଥମର ଅଭିଯାନ ଏହିଠାରେ ଶେଷ ।
ଆରେ ମନ ଚିର ନୋହେ ଏ ତୋର ଶରୀର
ସବୁ ସଙ୍ଗେ ଘେନିଯିବୁ କରିଛୁ ବିଚାର ।
ତୋର ପୁଅ ତୋର ଝିଅ ତୋର ପିତାମାତା
ଏମାନେ କି ସଙ୍ଗେ ଯିବେ ବେଳହୁଁ କହଥା ।

ରେ ଅଭ୍ରାନ୍ତ ମନ ଭ୍ରାନ୍ତ କଥାରେ ନ ରସ
ମିଛ ଖଟି କଷ୍ଟ ପୂର୍ଣ୍ଣ କରୁଅଛୁ କୋଷ ।
ଦାନ ପୁଣ୍ୟ ହେଳକୁ ତ ଈଦାଘ କୁ ଧେଇ
କୃପଣତା ଦୋଷେ ହାତେ ନ ଉଡ଼ାଉ କାଉ
ଯାହା ଯାହା ରଖି ତୁମ୍ଭ କରିଅଛୁ ଆଣ
ତୋ ଅନ୍ତେ ସେ ସବୁ ଧନ ବାଣ୍ଟି ନେବେ ଖଣ୍ଡ
ପଥର ସଙ୍ଗାଳ ତୁମ୍ଭ ନ ରଖିଲୁ କଛୁ
ପୁଣି ଜଗନ୍ନାଥ ନାମ ମନୁ ଦେଲୁ ପୋଛୁ ।
କସ ସେ ତାରକ ତୋତେ କେମନ୍ତେ ତରିବୁ
ଜାଣୁଛୁ ଭବ ସମୁଦ୍ରେ ବୁଡ଼ି କୁ ମରିବୁ ।
ବାଟେକ ବଡ଼ ଦେଉଳ ଚମକୁ ଭୁ ଅନା
ବନ୍ଧା ହୋଇଛୁ ପତିତ ପାବନର ବାନା ।
କଛୁ କରି ନ ପାରିଲେ ଏତିକ ତୁ କର
ବାନା ବୋଲେ ଆସ ପାପ କରିବି ଉଦ୍ଧାର ।
ଆବର ଦେଉଳେ ପଶ ହୋଇ ଶୁଦ୍ଧମତି
ଦର୍ଶନ ପାଇବୁ ଚକ୍ରି ଚତୁର୍ଦ୍ଧା ମୂରତି ।
ଯା ଦର୍ଶନକୁ ଆସନ୍ତି ବ୍ରହ୍ମା ଶୂଳପାଣି
ତାଙ୍କ ଆଦ୍ୟ ଅନ୍ତ କେହୁ ନ ପାରନ୍ତି ଜାଣି
ଯାର ପାଦ ନଖ କୋଣୁ ବହେ ମନ୍ଦାକିନୀ
ତାହାଙ୍କର ନାମ ପୁଣି ପତିତ ପାବନୀ ।
ଏମନ୍ତ ପ୍ରଭୁଙ୍କୁ ଥରେ ଦର୍ଶନଟିଏ କର
ମାୟା ସଂସାରରୁ ଯେବେ ହୋଇବୁ ଉଦ୍ଧାର ।
ବାଇଶି ପାବଚ୍ଛେ ବିକା ହେଉଛି କୈବଲ୍ୟ
ଦେବତାଙ୍କୁ ଯେ ପଦାର୍ଥ ଅଟଇ ଅମୂଲ୍ୟ ।
ମାନବ ଜନ୍ତୁ ଜଗତ ତାରିବାର ପାଇଁ
କୈବଲ୍ୟ ହେଉଛି ଦାନ ସେବାକରି ଯାଇ ।
ପାପ ତାପ ଗୁଡ଼ିଯିବ ହେବୁ ପୁଣ୍ୟ ଦେହୀ
ଏହି କଥା କଲେ ମନ ଭୟ ଆଉ ନାହିଁ ।
ଯମ ରାଜ୍ୟ ହାଲହୁଅ ଏବେ ଛ ପଡ଼ିଛି
ପାପୀ ନରାଧମ ନର୍କ କଛୁ ନ ମିଳୁଛି ।
ଏ ପଦ ପ୍ରଭୁଙ୍କୁ ଗୁଡ଼ ଆଦେନ ହେଉ ବାଇ
ନାରାୟଣ କାମପାଳ ଦର୍ଶନ ମାଗଇ ।

—o—

## ଯମ ଓ ଦଶଦିଗପାଳଙ୍କର ପରାଜୟ

ଏଥୁଅନ୍ତେ ପଚାରିଲେ ପରୀକ୍ଷିତ ନୃପ
ବରୁଣପୁରରୁ ଆସି କ କଲେ କୌଣପ ।
ସେହିକଥା ଶୁଣିବାକୁ ବଡ ଅଭିପ୍ରାୟ
କୁହ ଆହେ ଶୁକମୁନି ତହିଁର ବିଷୟ ।
କହନ୍ତି ସେ ମୁନିରାଜ ଶୁଣ ଅତଃପରେ
ଦୈତ୍ୟମାନେ ପ୍ରବେଶିଲେ ପୁଣି ଇନ୍ଦ୍ରପୁରେ ।
ଅସୁର ସୈନ୍ୟ ଜଗିଲେ ସବୁ ଦିଗେ ତହିଁ
ଐରାବତ ଗଜରାଜ ରଖିଲେକ ନେଇ ।
ଅସୁର ସୈନ୍ୟ ସେଠାରେ ଭ୍ରମଣ କରନ୍ତି
ଦେବତା ଜୋଟିଏ ବୋଲ ସେସ୍ଥାନେ ନାହାନ୍ତି
ହିରଣ୍ୟକଶିପୁ ତହିଁ ରଜନୀ ବଞ୍ଚିଲେ
ପ୍ରଭାତ ସମୟେ ନିତ୍ୟକର୍ମାଦି ସାରିଲେ ।
କୁବେର ଭଣ୍ଡାରୁ ଯାହା କରିଥିଲେ ଯୁର
ଅସୁରେ ନେଇ ଚଳିଲେ ଆପଣା ନଗର ।
ଅପ୍ସରୀ କନ୍ୟାଙ୍କୁ ଯାହା ଧରିଥିଲେ
ଅସୁରେ ଆପଣା ଭୋଗ୍ୟ କରିଣ ରଖିଲେ ।
ସ୍ୱର୍ଗ ଚତୁର୍ଦ୍ଦିଗେ ଦୈତ୍ୟ ଜଗି ରହିଥାନ୍ତି
ଦେବତା ଦେଖିଲେ ତାଙ୍କୁ ଖେଦି ତଡ଼ି ଦ୍ୟନ୍ତି
ଭୟରେ ଦେବତାଗଣ ଲୁଚିଲେ ପଳାଇ
ପଥେ ଗତାଗତ ହେବା ଦୁସ୍ତର ଅଟଇ ।
ସୁନ୍ଦର ଗୃହ ଭାଙ୍ଗିଣ କଲେ ନାଶଖାର
ହତଶ୍ରୀ ଦିଶଇ ଏବେ ସ୍ୱର୍ଗ ରମ୍ୟପୁର ।
କହନ୍ତି ଶ୍ରୀ ଶୁକମୁନି ପରୀକ୍ଷିତ ଶୁଣ
ହିରଣ୍ୟ ହିରଣ୍ୟାକ୍ଷ ଯେ ଭାଇ ବେନି ଜଣ ।
ଇନ୍ଦ୍ରର ନଗରମାନ ରହିଲେ ଆବୋରି
ହିରଣ୍ୟାକ୍ଷକୁ ହିରଣ୍ୟ ବୋଲଇ ବିଚାରି ।
ଏ ପୁରରେ ସୈନ୍ୟ ଘେନି ତୁମ୍ଭେ ଥାଅ ରହି
ଯମ ଦେବତାକୁ ଜୟ କରିଆସେ ମୁହିଁ ।
ଏମନ୍ତ କହି ହିରଣ୍ୟ ଅଳ୍ପ ସୈନ୍ୟ ଘେନି
ପ୍ରବେଶ ହୋଇଲା ଯାଇ ପୁର ସଞ୍ଜୀବନି ।
ପ୍ରଥମ ଦ୍ୱାରରେ ଥିଲେ ଯମର କିଙ୍କର
ଧାଇଁ ଯାଇ ଓଗାଳିଲେ ସବୁ ପରକାର
ନାନା ଅସ୍ତ୍ରମାନ ଧରି ଝମକାନ୍ତି ରାଗେ
ଅସୁର ବଳ ସମର ଆରମ୍ଭନ୍ତି ଆଗେ ।
ଡାକନ୍ତି ଯମଗଣେ ଶୁଣରେ ଅସୁରେ
ଆମ୍ଭର ମହିମା ଶୁଣି ନାହିଁକି କର୍ଣ୍ଣରେ ।
ଶମନ ରାଜାକୁ ତୁମ୍ଭେ ଆସିଅଛ ମାରି
ଜଗତ ଜୀବନ ସବୁ ଆମ୍ଭେ ଆଣୁ ଧରି ।
ଇନ୍ଦ୍ର ଦେବତା ପରାୟେ ମଣିଛ ଏହାଙ୍କୁ
ସେ ବାରତା ଶୁଣି ଆମ୍ଭେ ଜଗିଛୁ ଦ୍ୱାରକୁ ।
ପ୍ରାଣକୁ ଆଶା ଥିଲେ ରେ ବାହୁଡ଼ିଣ ଯାଅ
ସଂଗ୍ରାମେ ମରିବ ଯେବେ ଆଗୁଁ ସାର ହୁଅ ।
ଆଜ ତୁମ୍ଭର ଜୀବନ ରଖିଥିବୁଁ ଧରି
ଦୈତ୍ୟ ତନୁ ନଡ଼ାଇବୁଁ ଆନେ ଜାତ କରି ।
ଆମ୍ଭେ ସବୁ ଆତଯାତ କରୁଛୁ ସଂସାର
ତୁମ୍ଭେ ଛାର ଅସୁରରେ କେତେକ ମାତର ।
ତୁମ୍ଭର ତତେ ଏତେକ ନ ପରୁନ୍ତି ଖଳ
କାଳ ସଙ୍କଟରେ ଆସି ହୁଅ ଖଣ୍ଡି ଆଳ ।
ସୂର୍ଯ୍ୟଙ୍କର ନନ୍ଦନ ଏ ଜାଣ ବଡ ଜଣ
ଅସୁରମାନେ ତୁମ୍ଭେରେ କହୁଛି ନ ଜାଣ ।
ସମରର ଆଶା ଛାଡ଼ ଯାଅ ଯା ବାହୁଡ଼
ନୋହିଲେ ରଣେ ପଡ଼ିବ ପ୍ରାଣ ଛାଡ଼ିକରି ।
ଏମନ୍ତ ଶୁଣି ଅସୁରେ ବୋଲନ୍ତି କୋପରେ
ଆଜ ସମସ୍ତଙ୍କୁ ନିଶ୍ଚେ ମାରିବୁ ସମରେ ।
ଯମ ଦେବତା ସହିତେ ପ୍ରାଣ କି ପାଇବ
ମର୍ତ୍ତ୍ୟେ ମୃତ୍ୟୁ ଭୟ ଆଜ ସେ ରୂପେ ନ ଥିବ
ସେଥିପାଇଁ ଆସିଅଛୁ ଏ ସ୍ଥାନକୁ ଆମ୍ଭେ
ପ୍ରାଣ ଘେନି କାହିଁ ଯିବ ଆଜଦିନ ତୁମ୍ଭେ ।
ଏହା କହିଁ ଦଶଲକ୍ଷ ନିଶାଚର ବୀରେ
ଅସ୍ତ୍ରଶସ୍ତ୍ର ଘେନି ବେନେ ପଶିଲେ ଭିତରେ ।
ଦେଖି ଯମଗଣ ଅସ୍ତ୍ର ଦ୍ରୁମ୍ବାରିଲେ ଧରି
ତହୁଁ ଦୁଇବଳ ତହିଁ ହୋଇଲେ ମହାମରି ।
କରେ ଗଦାବର ଘେନି ହିରଣ୍ୟ ଅସୁର
ନିର୍ଘାତ ପଡ଼ିବା ପ୍ରାୟେ କରଇ ପ୍ରହାର ।
ଯମଗଣ ନାନା ଅସ୍ତ୍ର କୋପେ ପକାଉନ୍ତି
ଅଙ୍ଗରେ ପଡ଼ୁଥିବ ଅସ୍ତ୍ର ମସିଗୁଣ୍ଡା ହୋନ୍ତି
ହିରଣ୍ୟ ଦୈତ୍ୟ ପ୍ରହାର କରେ ପୁଣ ପୁଣ
ଯମଗଣ ଭାଜିଗଲେ ଦେଖି ତାର ରଣ ।

ଘୋଡ଼ାଇ ରଥରେ ଯାଇ ପଶିଲେ ଅସୁରେ
କାଳଦେବ ଓଗାଳନ୍ତ ଅତି କୋପଭରେ ।
କାଳପାଶେ ବାନ୍ଧିବାକୁ ବଶ୍ୱରନ୍ତି ମନ
ଦେଖି ଜାଣିପାରିଲେ ସେ ଦୁଇ ଯାତୁଧାନ ।
ପବନରୁ ଖରେ ଗଦା ପିଟିଲେକ ନେଇ
ବାଜନ୍ତେ କାଳଦେବତା ପଡ଼ିଲେକ ଶୋଇ ।
ଯମପୁରକୁ ଭାଙ୍ଗିଲେ ସକଳ ଅସୁର
କୃତାନ୍ତର ପାଶେ ଯାଇ ଜଣାଇଲା ଚର ।
ସାବଧାନେ ହୋଇ ଶୁଣ ଦେବ ଜନ୍ତୁପତି
କାଶ୍ୟପ ତନୟ ଆସି କରିଲା ଅମାନ୍ତ ।
ଅସୁର ସୈନ୍ୟଙ୍କୁ ଘେନ ଭାଙ୍ଗିଲା ତୋ ପୁର
କଟକରେ ପଶିଅଛି ହିରଣ୍ୟ ଅସୁର ।
ତାହା ଶୁଣି ଜନ୍ତୁପତି ହୋଇ କୋପାନଳ
ଲୌହମୟ ରଥେ ବସି ଚଳେ ତତକାଳ ।
କାଳଦଣ୍ଡ କରେ ଘେନ ଧାଇଁଲେକ ବେଗେ
ଯାଇଣ ମିଳିଲା ଦୈତ୍ୟ ହିରଣ୍ୟର ଆଗେ ।
ରହ ରହ ବୋଲିକରି ଓଗାଳିଲା ଯାଇ
ହିରଣ୍ୟ ଲେଉଟି ଗଦା ପିଟିଲେକ ନେଇ ।
ଗଦା ଘାତେ ରଥବର ହେଲା ଶତଖଣ୍ଡ
ତଳେ ଉଭାହୋଇ ଯମ କୋପରେ ପ୍ରଚଣ୍ଡ ।
କାଳଦଣ୍ଡ ଘେନ ବେଗେ ପିଟିଲେକ ନେଇ
ଆଡ଼ ହୋଇ ହିରଣ୍ୟ ଦ୍ରୁତଗତ ହୋଇ ।
ପୁଣି ହିରଣ୍ୟ ଧାଇଁଲା ପବନହୁଁ ଖରେ
କାଳଦଣ୍ଡକୁ ଉଚ୍ଛୁଡ଼ ପକାଏ କରରେ ।
ପୁଣି ଗଦାଏ ଧଇଲା କୋପଭରେ ଯମ
ପ୍ରହାର କରିବାକୁ ସେ କରନ୍ତେ ଉଦ୍ୟମ ।
ହିରଣ୍ୟ ସମ୍ଭାଳି ନେଲା ଗଦା ଆଡ଼ ଦେଇ
ଯମକୁ ପିଟନ୍ତେ ସେହୁ ଗଲା ଆଡ଼ ହୋଇ ।
ପୁଣିହିଁ ଧାଇଁ ଆସିଣ ମିଳିଲେକ ଆଗେ
ଗଦାଯୁଦ୍ଧ ବେନଙ୍କର ହୁଏ ମହାରାଗେ ।
ଗଦାପ୍ରହାର ଶବଦ ଶୁଭେ ମହାଘୋର
ଭୟେ ଯମଲୋକ କମ୍ପେ ହୋଇ ଥରହର ।
ଅଙ୍ଗେ ପଡ଼ ଗଦାବାଡ଼ି ଅଗ୍ନି ଝଲକଇ
ସେ ଗଦାଘାତେ କାହାର କିଛିହିଁ ନୁହଇ ।
ବେନ ଘଡ଼ି ପହରନ୍ତେ ବାଜେ ମହାଗୋଳ
ଦୁହିଁଙ୍କଠାରୁ କାହାର ହୁଏ ଶ୍ରମଝାଳ ।

ଅପ୍ରମିତ ତେଜଶାଳୀ ବଳି ଦୁଇ ସୁତ
ଝୁଝୁକଇ ଗଦାବର ପିଟଇ ତୁରିତ ।
ହିରଣ୍ୟ ପ୍ରହାରେ ଯମ ନ ପାରି ସମ୍ଭାଳି
ମସ୍ତକରେ ବାଜନ୍ତେ ସେ ପଡ଼ିଲେକ ଢଳି ।
ପୁଣି ଗଦା ପ୍ରହାରିବା କରନ୍ତେ ଉଦ୍ୟତ
ଚିତ୍ରଗୁପତ ଧଇଲେ ହସ୍ତକୁ ତୁରିତ ।
ବୋଇଲେ ତୁମ୍ଭେ ତ ଯେଣୁ କାଶ୍ୟପର ସୁତ
ଆମ୍ଭର ପ୍ରଭୁଏ ହେଲେ ମୁନି ଆମ୍ଭ ତାତ ।
ଆମ୍ଭେ କହୁଅଛୁଁ ବାବୁ ଏତିକ ତୁ ଘେନ
ତୋର ଖୁଡ଼ୁ ତାତ ଯେଣୁ ପିତାର ସମାନ ।
ପ୍ରାଣରେ ମାରିବା ତୋର ଉଚିତ ନୁହଇ
ଏବେ ତ ଜିଣିଲୁ ଯାଅ ସୈନ୍ୟ ବାହୁଡ଼ାଇ ।
ତୁ ଯେତେ ମାଇଲେ ସେହୁ ମରିବ ବା କାହୁଁ
ତା ପ୍ରାଣ ନେବାକୁ ବାବୁ ଶକ୍ତିମନ୍ତ ସେହୁଁ ।
ତାଙ୍କ ବଚନେ ହିରଣ୍ୟ ସନ୍ତୋଷ ହୋଇଲା
ରତ୍ନବସ୍ତ୍ର ଅଳଙ୍କାର ଘେନ ବାହୁଡ଼ିଲା ।
ଏମନ୍ତ ସମୟେ ଚେତ ଉଠି ଜନ୍ତୁନାଥ
ଲଜ୍ଜାରେ ସେ କ୍ରୋଧଯୁକ୍ତ ହୋଇଲେ ବହୁତ ।
ଚିତ୍ରଗୁପତ ଅନେକ ବୁଝାଇ କହିଲେ
ସମରର ହାରି ଜିତି ହୋଇଥାଏ ଭଲେ ।
ଏ ସ୍ଥିର କଥା ଶୋଚନା କରୁଅଛ ଚିତ୍ତେ
ଶୁଣିଣ ଛାଡ଼ିଲେ ତାହା ମନରୁ କଷ୍ଟତ ।
ଆବର କହୁଛି ଶୁଣ ଇନ୍ଦ୍ରଙ୍କୁ ଜିଣିଲା
ତାହାଙ୍କ ମନରେ କେତେ ଅନୁତାପ ହେଲା ।
କ୍ଷମୀ ବୃତ୍ତି କରୁଥିଲେ ଅଛି ହାରିଜିଣ
ଏଥିକ ଏତେ ଶୋଚନା ଅଟେ ଅକାରଣ ।
ଶୁଣି ସନ୍ତୋଷରେ ଯମ ନିଜପୁରେ ଗଲେ
ନିତ୍ୟ ନଇମିତ୍ୟ କାର୍ଯ୍ୟ ସମ୍ପାଦନ କଲେ ।
କଙ୍କରଗଣ ଉଠିଲେ ପୁଣି ପ୍ରାଣ ପାଇ
ଯେହୁ ଯେଉଁ କର୍ମେ ଥିଲେ ରହିଲେ ସେପାଇଁ ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ନୃପବର
ଯମ ଜିଣି ସଞ୍ଜୀବନୀ ପୁରରୁ ବାହାର ।
ଅଗ୍ନି ନୈଋତ ଜିଣିଲା ରଣେ ସମସ୍ତଙ୍କୁ
ଦେବତା ନୋହିଲେ ସଧ ସମରେ ତାହାଙ୍କୁ ।
ସ୍ୱର୍ଗମଣ୍ଡଳେ ଭ୍ରମଣି କରେ ମହାବଳ
ଭୟେ ପଳାଇ ଲୁଚିଲେ ଦଶଦିଗପାଳ ।

ଯାଇଣ ହରଣାକ୍ଷ ପାଶେ ପ୍ରବେଶ ହୋଇଲ
ଯୁଦ୍ଧର ବୃତ୍ତାନ୍ତମାନ ସକଳ କହିଲ ।
ଶୁଣି ପୁଲକିତ ହେଲ ତାର ସାନଭାଇ
ବୋଇଲ ଶତ୍ରୁ ଏ ଗଲେ ନିଶୋଧନ ହେଇ ।
ଏହା କହି ଇନ୍ଦ୍ରପୁର ଆଜ ନ ଛାଡ଼ିଲେ
ଇନ୍ଦ୍ର ଭୋଗ ପାଇ ମହାସୁଖରେ ରହିଲେ ।
ତୁହି ପ୍ରଭୁ ଜଗନ୍ନାଥ ସବୁ କରିପାରୁ
ଦୁବକୁ ଦାରୁ କେବେ ବା ଦାରୁ ଦୁବ କରୁ ।
ତୁ ନାଥ ଗର୍ବଗଞ୍ଜନ ହରୁ ଗର୍ବୀ ଗର୍ବ
ବନବାସୀ ପାଣ୍ଡବ ରଖି ନାଶିଲୁ କୌରବ ।
ଅତି ଦାମ୍ଭ ବଳୀ ଦୈତ୍ୟ ରଖିଲୁ ପାତାଳେ
ତୁହି ପ୍ରଭୁ ଦୟାମୟ ଅଟୁ ଏ ସ୍ୟନେ ।
ତୋତେ ଯେନ୍ତୁ ନିରନ୍ତର କରଇ ଭାବନା ।
ପୂର୍ଣ୍ଣ କରି ଦେଉ ପ୍ରଭୁ ତା ମନ କାମନା ।
ସମ୍ପଦେ ଥାଇ ଯେ ପ୍ରାଣୀ ଡାକୁଥାଇ ତୋତେ
ତା ଗୁହାରି ଶୁଣୁ ଆଗ ବିପଦ ଆଗତେ ।
କାହିଁ ବା ସଙ୍କଟ ତାର ତୋହର ଦେଖନ୍ତେ
ତନ ଦାଢ଼େ ରହିବ କି ତା ନଖ କଣ୍ଟେ ।
ହେ ଆର୍ତ୍ତଭଞ୍ଜନ ନାଥ ସେନ ମୋ ଆରତ
ତୋର ନାମ ରଟୁଥାଉ ରସନା ନିରତ ।
ଅନ୍ତକାଳରେ ଥରେ ଦେବୁ ଦରଶନ
କହେ କାମପାଳ ଦ୍ୱିଜ ନାରାୟଣ ଧ୍ୟାନ ।

—*—

## ଦିତି କାଶ୍ୟପଙ୍କର କଥୋପକଥନ ଓ ଇନ୍ଦ୍ରଙ୍କର ପିତାଙ୍କ ନିକଟରେ ଅନୁନୟ, ସ୍ୱର୍ଗପୁର ପୁନଃ ପ୍ରାପ୍ତି

ପୁଣିହିଁ ପୃଚ୍ଛା କରନ୍ତି ପରୀକ୍ଷ ନୃପତି
ସ୍ୱର୍ଗରେ ଦଇତ୍ୟ ଏବେ ହେଲେ ଅଧିପତି ।
ଭୟେ ଇନ୍ଦ୍ର ପର୍ବତରେ ଦେବେ ପଳାଇଲେ
ତାହା ଶୁଣି କାଶ୍ୟପ କି ବିଚାର କଲେ ।
ଇନ୍ଦ୍ର ପୁଣି ପାଇଥିଲେ ନା ସ୍ୱର୍ଗେ ଅଧିକାର
କାହା ବୋଲେ ବାହୁଡ଼ିଲା ପୁଣି ସେ ଅସୁର ।
ଏହା ମୋତେ ବିସ୍ତାରିଣ କୁହ ତପୋରାଶି
କହନ୍ତି ଶ୍ରୀ ଶୁକମୁନି ଶୁଣ ଦଣ୍ଡଧାରୀ ।
ଦଇତ୍ୟପାଳଙ୍କର ରଣେ ହୋଇ ଜୟୀ
ସ୍ୱର୍ଗପୁରେ ଇନ୍ଦ୍ର ହେଲ ଦୈତ୍ୟ ମାସ ଦୁଇ ।
ଅପସରା କନ୍ୟାଙ୍କୁ ନୃତ୍ୟ କରାଇଲା
ଦୈତ୍ୟଙ୍କ ଦ୍ୱାରେ ମର୍ଦ୍ଦଳ ଦୁନ୍ଦୁଭି ବାଜିଲା ।
ବ୍ରହ୍ମଲୋକ ପର୍ଯ୍ୟନ୍ତେ ବୁଲିବାକୁ ଯାନ୍ତି
ଭୟରେ କୌଣସି ଦେବ ରହି ନ ପାରନ୍ତି ।
ଇନ୍ଦ୍ର ଭୁବନ ତାହାର କରିଲା ବସତି
ସ୍ୱର୍ଗରେ ବିବାଦ କଲି ହୋଇ ପ୍ରବୃତ୍ତି ।
ଯେଉଁଦିନ ସ୍ୱର୍ଗପୁରେ ଘୋର ଯୁଦ୍ଧ କଲା
ଯୁଦ୍ଧେ ହାରି ଇନ୍ଦ୍ରଦେବ ଯେବେ ପଳାଇଲା ।
ସେହି କଥାକୁ କଶ୍ୟପ ପାଇଣ ବାରତା
ଅନେକ ସେ ଚିନ୍ତା କଲେ ମନେ ପାଇ ବ୍ୟଥା ।
ଦିତିଙ୍କୁ ଡାକି ବୋଲନ୍ତି ଶୁଣ ମୋ ବଚନ
ଶୁନ୍ଦଙ୍କର ଦୁଷ୍ଟପଣ ଦେଖ ଗୋ କେସନ ।
ସ୍ୱର୍ଗ ଯାଇ ଇନ୍ଦ୍ରଦେବ ମାରି ଖେଦିଦେଲେ
କୁବେର ଭଣ୍ଡାରୁ ଧନ ସର୍ବ ଜୟ କଲେ
ବରୁଣ ଯମକୁ ପୁଣି ରଣେ ଜୟ କଲେ
ଏବେ ସେ ଅମରାବତୀ ମାଡ଼ିଣ ବସିଲେ ।
ଅସୁର ଲକ୍ଷ ଏଣୁ ତେଣୁ ଠୁଳକରି
ସ୍ୱର୍ଗପୁରେଯାକ କଲେ ଯାଇ ହାଲ ହୁରି ।
ଏହା କରିବେ ବୋଲି ସେ ଏଠାବରୁ ଗଲେ
ମର୍ତ୍ତ୍ୟ ଭୁବନରେ ଯାଇ ରହିବୁ ବୋଇଲେ ।
ସେତେ ତିଆରିଲେ ମୁହିଁ ଜାଣିଛୁ ତ ତୁହି
ତୁ ଅବା କେତେ କହିଛୁ ତା ଶୁଣିଲେ କାହିଁ ।
ଆମ୍ଭ ତିଆରିବା କଥା ସବୁ ଛାଡ଼ିଦେଲେ
ଏବେ ଆସି କଥା ଏତେ ସଙ୍କଟ ଆଣିଲେ ।
ଦେବତାଗୁଡ଼ିକ ସବୁ ଗଲେ ଯେ ପଳାଇ
ଏ ଘାଟିରେ ପୁତ୍ରଙ୍କର ତ୍ରାଣ ଯାଇନାହିଁ ।
ଶ୍ରୀ ଶ୍ରୀ ନାରାୟଣଙ୍କର ଅଟନ୍ତି ସେ ପ୍ରିୟ
ଏହା ଜାଣିଲେ ସେ କୋପ କରିବେ ନିଶ୍ଚୟ ।
ଦିତି ବୋଇଲେ ଏବେତ ଯାହା ତାହା ହେଉ
ମୁହିଁ ତାହାଙ୍କର କଥା ନ ଶୁଣିବି ଆଉ ।
ଯେତେକହିଲେ ତ ଆମ୍ଭେ ବୋଲହିଁ ନ କଲେ
ଜଗତ ନାଶିବା ପାଇଁ ଅନ୍ଧ ହୋଇ ଗଲେ ।
କାଶ୍ୟପ ବୋଇଲେ ଆଗ ହୋଇ ଏ ଲାଗନ୍ତି
ଦେବତାଙ୍କ ପାଶେ ଯାଇ ଅନର୍ଥ ଉଠାନ୍ତି ।

ସେ ଦୋଷେ ପୁତ୍ର ମାରନ୍ତି ଦେବ ନାରାୟଣ
ଏବେ ସେ ଜନ୍ମ ଧଇଲେ ଜାଣ ସେହି ଗୁଣ ।
ମୁହିଁ ପରା ପୂର୍ବରୁ ଗୋ ତୋତେ ଅଛି କହି
ତୋ ଗର୍ଭରୁ ଦୈତ୍ୟ ଜନ୍ମି ଶରଦେବ ନାହିଁ
ତୁହି ମିନା ବୋଲୁ ମୋର ପୁତ୍ର ହେଲା ନାହିଁ
ମୋର ପ୍ରତି ତୁମ୍ଭର ଯେ ଦୟାଭାବ କାହିଁ ।
ତୋର ପୁତ୍ରମାନେ ସବୁ ଅକର୍ମ କରନ୍ତି
ଅହଲ୍ୟା କରି ଦେବତା ଗୋଡ଼ାଇ ମାରନ୍ତି ।
ମୁନିଙ୍କ ବଚନେ ଦିତି ଥିଲେ କ୍ଷୁଣ୍ଣ ହୋଇ
ଏହିକାଳେ ହିରଣ୍ୟାକ୍ଷ ପ୍ରବେଶିଲେ ଯାଇ ।
ପିତା ମାତାଙ୍କ ଚରଣେ କଲେ ନମସ୍କାର
ତାକୁ ଦେଖିଣ କାଶ୍ୟପ କୋପେ ଥରହର ।
ତାହାକୁ ମୁହିଁ ବୋଲନ୍ତି ଅତି କୋପଭରେ
ଇନ୍ଦ୍ର ସଙ୍ଗେ ଯୁଦ୍ଧ କଲ କପାଇଁ ସମରେ ।
ମୋହର କୁମର ସେହୁ ତୁମ୍ଭ ଜ୍ୟେଷ୍ଠଭାଇ
ନେଇ ତାର ଧନରାଜ୍ୟ ତାକୁ ଖେଦିଦେଇ ।
ତୁମ୍ଭର ଏ ଦୁଷ୍ଟପଣ କେମନ୍ତ ଅଟଇ
ପିତାବାକ୍ୟେ ହିରଣ୍ୟାକ୍ଷ ଉତ୍ତର ଦିଅଇ ।
ନରପତି ତାର ସଙ୍ଗେ ରଣ କରିଅଛି
ମୁହିଁ ତାର କଥା ସବୁ ନ ଜାଣଇ କିଛି ।
କେବଳ ସଙ୍ଗରେ ମିନା ଥିଲି ମାତ୍ର ମୁହିଁ
ଶୁଣି କାଶ୍ୟପ କହିଲେ ତହୁଁ କ୍ଷୁଣ୍ଣ ହୋଇ ।
ହିରଣ୍ୟାକ୍ଷ ବୋଲେ ତାକୁ କୁହ ତୁମ୍ଭେ ପିତା
ଆମ୍ଭେ ନିଜପୁରେ ଯିବୁଁ ରହୁ ଇନ୍ଦ୍ର ଭ୍ରାତା ।
ନ ଶୁଣନ୍ତି ତାର କଥା ନ କହି ବଚନ
କ ବୋଲିବେ ତାକୁ ଯେତ କନିଷ୍ଠ ନନ୍ଦନ ।
ଉପରୋଧ କରି କିଛି ବୋଲି ନ ପାରନ୍ତି
ଦିତି ଦେଖି ସେ ପୁତ୍ରକୁ ସ୍ତନ୍ୟପାନ ଦିଅନ୍ତି ।
ମାତା ସ୍ତନ୍ୟ ପାନ ସାରି ଉଠିଲେକ ସେହି
ପୁଣି କିଛି ଖାଇ ଇନ୍ଦ୍ର ପୁରକୁ ଗମଇ ।
ଏଥିଅନନ୍ତରେ ତୁମ୍ଭେ ଶୁଣ ନୃପବର
ସ୍ୱର୍ଗ ଛାଡ଼ି ପଳାଇଣ ଗଲେ ପୁରନ୍ଦର ।
ଦୈତ୍ୟ ପୁର ଛାଡ଼ିଯିବେ ବୋଲି ସେ ଥିଲେ
ତେଣୁ ଲଜ୍ଜାବଶେ ପିତା ପାଶକୁ ନ ଗଲେ ।
ଯହୁଁ ଇନ୍ଦ୍ର ଭୁବନରୁ ନ ଗଲେ ଅସୁର
ପିତା ପାଶେ ଯିବା ଇଚ୍ଛା କଲେ ପୁରନ୍ଦର ।
ପ୍ରଥମେ ବ୍ରହ୍ମାଙ୍କ ପାଶେ ଯାଇଥିଲେ କହି
ମାଡ଼ିବସିଲା ମୋ ପୁର ସେ ହିରଣ୍ୟ ଯାଇ ।
ସମସ୍ତ ପଦାର୍ଥ ମୋର ନେଲା ପୁର କରି
ଇନ୍ଦ୍ର ବଚନେ ବୋଲନ୍ତି ତହୁଁ କୃଷ୍ଣାଧାରୀ ।
ସେ ବେନିଭାଇ ଅଟନ୍ତି କାଶ୍ୟପଙ୍କ ସୁତ
ତୁହି ମଧ୍ୟ ତାହାଙ୍କର ଔରସରୁ ଜାତ ।
ବୈମାତ୍ରୀ ଭାଇ ବୋଲିଣ ଅହଙ୍କାର କଲେ
ତେଣୁ ତୋତେ ଜିଣି ଇନ୍ଦ୍ରପଦ ତୋର ନେଲେ ।
ଅଳ୍ପ ଦିନରେ ପାପରେ ହୋଇବ ନିଧନ
ଏବେ ତୋର ପିତା ପାଶେ କର ତୁ ଗମନ
ପିତାଙ୍କୁ ଘେନି ତୋହର ତାଙ୍କଠାକୁ ଆସ
ତାଙ୍କ ବୋଲେ ସ୍ୱର୍ଗ ଛାଡ଼ି ଚଳିବେ ରାକ୍ଷସ ।
ବ୍ରହ୍ମା ବଚନେ ଚଳନ୍ତି ଲୂଚି ସୁରପତି
ବସି ଭାବନା କରନ୍ତି ମୁନି ମହାମତି ।
ଧର୍ମଭନ୍ତ ଇନ୍ଦ୍ର ପୁତ୍ର ମୋର ଗଲା କାହିଁ
ମୋ ପାଶେ ନଇଲା କିବା ଅବଗୁଣ ପାଇ ।
ଅହିତ ପୁତ୍ରର ପାଇଁ ଚିନ୍ତା କରୁଛନ୍ତି
ତେଣୁ କାଶ୍ୟପ ଋଷିଙ୍କୁ କଥା ନ କହନ୍ତି ।
ଦିତି ବୋଲୁଛନ୍ତି ପୁଣି ସ୍ୱାମୀ ମୁଖ ଚାହିଁ
ଅହିତ ମୋତେ ଦେଖିଣ କଥା କହୁନାହିଁ ।
କାଶ୍ୟପ ବୋଇଲେ ତୋର ପୁତ୍ର ଯୁଦ୍ଧକଲେ
ତାହାର ପୁତ୍ରକୁ ରାଜ୍ୟ ବାହାର କରିଲେ ।
ସେମନ୍ତ ଅବଗୁଣ ଧରି କଥା କହୁନାହିଁ
ତୁକ କହିଲୁ ପୁତ୍ରକୁ ପୁଚ୍ଛିବାର ପାଇଁ ।
ସେକଥା ଗୋଟି ତାହାର ନ ଜାଣିବା ପଣ
ଅହଙ୍କାର କରିବାର କେବଣ କାରଣ ।
ଆମ୍ଭଠାରେ ତ ତାହାର ନାହିଁ ସୁସ୍ଥମନ
ତୋତେ ଏବା କାହିଁକି ସେ କହିବ ବଚନ ।
ସ୍ୱାମୀଙ୍କ ବଚନ ଶୁଣି ଦିତି କ୍ଷୁଣ୍ଣ ହେଲେ
ସ୍ୱାମୀଙ୍କୁ ଆଦରେ ଆଉ କିଛି ନ ବୋଇଲେ ।
ଏମନ୍ତ କାଳେ ମିଳିଲେ ଆସି ସୁରପତି
ଗନ୍ଧର୍ବାଦିକ ବେଷ୍ଟିତ ସଙ୍ଗରେ ଅଛନ୍ତି ।
ପାନ ବାହାନାଦି ନାହିଁ ପାଦରେ ଗମନ
ପ୍ରଣାମ କରିଲେ ଆସି ପିତା ସନ୍ନିଧାନ ।
ସନ୍ତୋଷେ କଲ୍ୟାଣ କଲେ କାଶ୍ୟପ ମହର୍ଷି
ମାତାଙ୍କୁ ମାନ୍ୟ କରିଲେ ତାଙ୍କ ପାଦ ସ୍ପର୍ଶି ।

ହାତ ଧରିଣ କାଶ୍ୟପ ବସାଇଲେ ନେଇ
ଇନ୍ଦ୍ର ନେତ୍ରୁ ଲୁହ ବହେ ପିତାମୁଖ ଚାହିଁ ।
କାଶ୍ୟପ ମଧ କରିଲେ ଆଖି ଥନ ଥନ
ଅଦିତି ପୁତ୍ର କଷ୍ଟେ କରନ୍ତି ବେଦନ ।
ଇନ୍ଦ୍ର ଦେବତା କହନ୍ତି କରିଣ କାରୁଣ୍ୟ
ହେ ପିତା ଦେଖିଲ ଯାହା କରିଲା ହିରଣ୍ୟ ।
ଅସୁରସୈନ୍ୟ ଗୁଡ଼ାଏ ଘେନିଣ ଆଇଲା
ମୋତେ ଖେଦି ମୋ କଟକ ଚୂର କରିଦେଲା ।
ଦେବ ଭଣ୍ଡାରରେ ଥିଲା ଅଷ୍ଟନିଧିମାନ
ତାହା ସବୁ ଚୂରିନେଲା ତୁମ୍ଭର ନନ୍ଦନ ।
ଗନ୍ଧର୍ବ ବିଦ୍ୟାଧରଙ୍କୁ ପକାଇଲା ମାରି
ଏବେ ନ ଯାଇ ରହିଛି ମୋର ନିଜପୁରୀ
ମୋତେ ମଧ ମାରୁଥିଲା ଗଲି ମୁଁ ପଳାଇ
ହେ ପିତା ତାହାରଠାରେ ଉପରୋଧ ନାହିଁ ।
ବ୍ରହ୍ମା ନିକଟକୁ ଗଲି କହିବାର ପାଇଁ
ସେ ମୋତେ ତୁମ୍ଭ ନିକଟେ ଦେଲେକ ପଠାଇ
ହେ ପିତା ଏବେ ମୁହିଁ ତ କରିବି କେବଣ
ଯାଉଛି କହିବି ଏବେ ପ୍ରଭୁ ନାରାୟଣ ।
ଧର୍ମ ବିରୁଦ୍ଧ ଅଇଲା ମୁହିଁ ସିନା ଏଥେ
ତୁମ୍ଭେ ପଶ୍ଚାତରେ ନିନ୍ଦା କରିଥାନ୍ତ ମୋତେ
ତା ନୋହିଲେ ତୁମ୍ଭେ ତାଙ୍କୁ ବୋଧକର ଯାଇ
ମୋ ପଦାର୍ଥ ମୋତେ ଏବେ ଦିଅ ବାହୁଡ଼ାଇ
ତୁମ୍ଭ କଥା ଯଦ୍ୟପି ନ ଘେନିବ ସେହି
ତେତେବେଳେ ଆନବୁଦ୍ଧି କହିବଇଁ ମୁହିଁ ।
ଏଥି ନିମନ୍ତେ ଅଇଲା ତୁମ୍ଭର ସ୍ଥମୁକୁ
ନିଜେ ଦେଖିଯାଅ ଏବେ ହିରଣ୍ୟଠାକୁ ।
ତୁମ୍ଭେତ ଆମ୍ଭର ପିତା ପୁଣି ପ୍ରାଣଦାତା
ତୁମ୍ଭର କଥା କି କେବେ ହୋଇବ ଅନ୍ୟଥା
କାଶ୍ୟପ ବୋଇଲେ ତୁହି ଜାଣିଥିଲୁ ରହି
ମୋଠାକୁ ନଇଲୁ କିସ ଅବଗୁଣ ପାଇ ।
ସେହିଦିନ କହିଥାନ୍ତି ଯାନ୍ତା ତାର ପୁରେ
ଏଠାକୁ ନ ଆସି କପାଁ ଗଲୁ ଆମଠାରେ ।
ଇନ୍ଦ୍ର ବୋଇଲେ ପିତା ହେ କାହିଁକି ନଇଲି
ବାହୁଡ଼ିଣ ଯିବ ଅବା ମନେ ବିଚାରିଲି ।
ଏତେଦିନଯାଏ ତାକୁ ରହିଥିଲି ଚାହିଁ
କେତେବେଳେ ନ ଗଲା ଅଛି ଆଜଯାଏ ରହି ।

ଯିବା ପ୍ରାପ୍ତ ବୁଝି ମନେ ଏଠାକୁ ନଇଲି
ନ ଯିବାର ଦେଖି ତୁମ୍ଭ ସ୍ଥମୁଖରେ କହିଲି ।
ଏମନ୍ତ ଶୁଣି କାଶ୍ୟପ ମଉନ ହୋଇଲେ
ଏହିକ୍ଷଣି ଯିବ ବୋଲି ଇନ୍ଦ୍ରକୁ କହିଲେ ।
ମୋର ବଚନେ ଅବଶ୍ୟ ଯିବ ନିଜପୁର
ଆଜ ତୋ ଇନ୍ଦ୍ର ଭବନେ ରହିବ କୁମର ।
ଏବେ ତୋର ମାତା ପାଶେ ତୁହି ଥାଅ ରହି
ହିରଣ୍ୟ ପାଶକୁ ଆଜ ଯାଉଅଛି ମୁହିଁ ।
ଶୁଣିକରି ଇନ୍ଦ୍ରଦେବ ସନ୍ତୋଷ ହୋଇଲେ
କାଶ୍ୟପ ମହାତମା ଯେ ସେଠାରୁ ଚଳିଲେ ।
ସ୍ୱର୍ଗପଥ ଯେ ଗମନ କଲେ ମୁନିବର
ସେଠାରେ ଦେଖିଲେ ସବୁ ଗୃହ ନାରଖାର
ବିସ୍ମୟ ହୋଇ ସେଠାରୁ ପୁଣି ଚଳିଯାନ୍ତି
ସ୍ୱର୍ଗରେ ଗୋଟିଏ ସୁଦ୍ଧା ଦେବ ନ ଦେଖନ୍ତି ।
ହିରଣ୍ୟ ଭୟେ ସେମାନେ ଅଛନ୍ତି ପଳାଇ
ଦୈତ୍ୟ ବିହାର କରନ୍ତି ସ୍ୱର୍ଗପୁରେ ଥାଇ ।
ଇନ୍ଦ୍ର ଭୁବନରେ ଯାଇ ପ୍ରବେଶ ହୋଇଲେ
ଦେଖି ଅସୁର ସକଳେ ନମସ୍କାର କଲେ ।
କଲ୍ୟାଣ କରି ଚଳନ୍ତି ମୁନି ମହା ଖରେ
ପ୍ରବେଶ ହେଲେ ହିରଣ୍ୟ ଅଛି ଯେଉଁଠାରେ
ଦେଖିଲେ ହିରଣ୍ୟ ଇନ୍ଦ୍ର ଆସ୍ଥାନେ ବସିଛି
ମଞ୍ଜ ଅଗ୍ନି ତେଜ ପ୍ରାପ୍ତ ଜ୍ୟୋତି ବିରାଜୁଛି
ଇନ୍ଦ୍ରର ଭୁବନ ଦିଶେ ଅତି ଶୋଭାକର
ତିନି ଭୁବନେ ନ ଥିବ ତାର ପଟାନ୍ତର ।
ପିତାଙ୍କୁ ଦେଖି ହିରଣ୍ୟ ନିଜ ସମ୍ମୁଖରେ
ଆସନ ଦେଇଣ ଉଠ ଅତି ସମ୍ମାନରେ ।
ପିତାଙ୍କ ଚରଣ ତଳେ କଲା ପ୍ରଣିପାତ
ଶିରେ କରଯୋଡ଼ି ପୁଣି ଉଠିଲେ ତ୍ୱରିତ ।
ସିଂହାସନରେ ତାହାଙ୍କୁ ବସାଇଲା ନେଇ
ନିଜେ ଅନ୍ୟ ଆସନରେ ବସିଲାକ ଯାଇ ।
ଦଣ୍ଡେ ଘଡ଼ିଏ ପର୍ଯ୍ୟନ୍ତ ହୋଇଲେ ମଉନ
ହିରଣ୍ୟ ବିଚାରେ ଇନ୍ଦ୍ର କହିଲା ଯାଇଣ ।
ସେହି କଥା ଶୁଣି ପିତା ଆସିଛନ୍ତି ଅବା
ଯେ କଥା ପଡ଼ିବ ତାହା ବୁଝିଣ କହିବା ।
ଏହି ପରକାରେ ମନେ ବିଚାରେ ଦଇତ
ପୁତ୍ରକୁ ଚାହିଁ କଶ୍ୟପ କରନ୍ତି ବ୍ୟକତ ।

ଇନ୍ଦ୍ର ଦେବତାର ସଙ୍ଗେ କର୍ମୀ ମନ୍ତ୍ର କଲୁ
ତାଙ୍କୁ ଖେଦ ଦେଇ ତାର ରାଜ୍ୟ ନଡାଇଲୁ ।
ସେ ମୋର ମଧ୍ୟମ ସୁତ ତୋର ଜ୍ୟେଷ୍ଠଭାଇ
ତାକୁ ଏମନ୍ତ କରିବା ତୋତେ ନ ଯୋଗାଇ
ସ୍ୱଭାବେ ତେ ହର ସେହୁ ଗଉରବ ଜନ
ଜ୍ୟେଷ୍ଠ ସହୋଦର ତେଣୁ ପିତାର ସମାନ ।
ଯେତେ ଶିଖାଇଅଛୁ ତୋତେ ନାହିଁକି ତା ମନେ
ଏବେ ସେହି କଥା ସବୁ ଭୁଲିଲୁ କେସନେ ।
ଦେବତାଙ୍କୁ ମାରି ପିଟି ପୁଣି ତଡ଼ିଦେଲୁ
ମୋର କୁଳରେ କଳଙ୍କ ଲେପନ ତୁ କଲୁ ।
ଦ୍ୱନ୍ଦ୍ୱ କରିବାକୁ ତୋର ପ ଟଶ ଯାଇ ନାହିଁ
ତୁ ଆସି ଅନର୍ଥ କଲୁ ତା ସଙ୍ଗେ କର୍ମାଇଁ ।
ମୋର ଆଗେ ବାନ୍ଧ ବାନ୍ଧ କହୁଛୁ ଯେ ଯାଇ
ଏତେଦିନ ଏଠାରେ ରହିଛୁ କର୍ମାଇଁ ।
ତୋ ନିମନ୍ତେ ମୁହିଁ ନିନ୍ଦା ପାଇଲି ବହୁତ
ଏବେ ଏ ଠାବରୁ ତୁହି ଯାଅରେ ତୁରିତ ।
ତୋତେ ମୁଁ ଦେଉଛି ଜାଣି ଇନ୍ଦ୍ର ତୁଲ୍ୟ ପୁର
ନଗପଦେ ରହି ତୁହି ତାହା ଭୋଗକର ।
କାଶ୍ୟପ କହିଲେ ଯହୁଁ ବୁଝାଇ ଏସନ
ମୁଖ ପୋତିଣ ଶୁଣିଲି ସକଳ ବଚନ ।
ପାଶ ମନ୍ତ୍ରୀ ସେ ନ୍ୟବଳ ସମସ୍ତେ ଶୁଣନ୍ତି
ପିତାଙ୍କୁ ବୃହିଁ ହିରଣ୍ୟ ବୋଲଇ ଭାରତୀ ।
ଯେବେ ତୁମ୍ଭର ପୁତ୍ରଙ୍କୁ ମାରି ଦେଲେ ଜାତ
ସେ କାଳରେ ଏତେଶୋକ ନ କଲ ହେ ପିତା
ଶୁଣି କାଶ୍ୟପ ବୋଇଲେ ଦ୍ୱନ୍ଦ୍ୱ ଆଗ କଲେ
ତେଣୁ ତାଙ୍କ ଦୁଷ୍ଟପଣେ ସବୁ ନାଶ ଗଲେ ।
ତୁହି ଏବେ ଅର୍ଜିଅଛୁ ଯେଉଁ ରୂପେ ଦ୍ୱନ୍ଦ୍ୱ
ଏଥିରେ ଦୁଇ କୁଳକୁ ଉପୁଜନ୍ତା ମନ୍ଦ ।
ତୁ ଅବା ମରନ୍ତୁ କିବା ସେ ଅବା ମରନ୍ତା
କାହାର କଷ୍ଟ କରନ୍ତି ତେତେବେଳେ ପନ୍ଥା ।
ବେଳ ଥାଉଁ ଥାଉଁ ତେଣୁ ଭାଙ୍ଗୁଅଛୁ ଗୋଳ
ବୁଝି ନ ପାରୁଛୁ ତୁହି ରେ ନବୋଧ ବାଳ
ପୂର୍ବେ ଏହିରୂପ କରି ଯୁଦ୍ଧରେ ସେ ମଲେ
ତୋ ଯଗପ୍ତେ ଶିଖାଇଲି କେବେ ନ ବୁଝିଲେ
ସେ କାଳ କଥା ଅହନ୍ତା ଧରିବା ହୃଦରେ
ଏମନ୍ତ ଜନକୁ ଭଲ ନ ବୋଲି ସଂସାରେ ।

ହିରଣ୍ୟ ବୋଇଲା ଇନ୍ଦ୍ର ତୁମ୍ଭର କୁମର
ବହୁକାଳଧାଏ ହେଲା ସେହୁ ପୁରନ୍ଦର ।
ମୁହିଁ ତ ତୁମ୍ଭର ପୁଣି ତନୟ ଅଟଇ
ଥୋକାଏକ କାଳ ହେବ ମୁହିଁ ସୁରସାଇଁ ।
ମୁହିଁ ଯେ କାଟକ ନୁହଇ ତୁମ୍ଭ ପଞ୍ଝପର
ଏଥିକ କର୍ମାଇ ପିତା ଏଡ଼େ କୋପ କର ।
ସେହୁ ହୋଇଥିଲା ଇନ୍ଦ୍ର ଏବେ ହେଲି ମୁହିଁ
ଏହି କଥାକୁ କୁଳର କଳଙ୍କ କର୍ମାଇଁ ।
ଆଜ୍ଞାକର ଏବେ ମୁହିଁ ହେବ ପୁରନ୍ଦର
କାଶ୍ୟପ ବୋଲନ୍ତି ଶୁଣ ନବୋଧ କୁମର ।
ଇନ୍ଦ୍ର ପଦରେ ଆମ୍ଭର ଲେଶ ନାହିଁ ପୁଣ
ସେହି ଅଧିକାର ଦିଅନ୍ତି ପ୍ରଭୁ ନାରାୟଣ ।
ସେହୁ ଦେଲେ ଏହି ପଦ ଜାଣ ସିଦ୍ଧ ହୁଏ
ଅପଥା ବଳେ ଘେନିଲେ ତା ମୃତ୍ୟୁ ନିଶ୍ଚୟେ ।
ତୁହି ଏବେ ଏଠାବରୁ ବେଗେ ଚାଲିଯାଅ
ମୋର ଆଜ୍ଞା ମାନୁ ଯେବେ ଦଣ୍ଡେ ହେ ନଥାଅ
ହିରଣ୍ୟ ବୋଇଲା ପୂର୍ବୁ ଶୁଣିଅଛୁ ମୁହିଁ •
ସବୁକାଳେ ଧାଅଁ ତୁମ୍ଭେ ଦେବତାଙ୍କ ପାଇଁ ।
ହିତ ପୁତ୍ରଙ୍କୁ ତୁମ୍ଭର ଟିକେ ନାହିଁ ଶ୍ରଦ୍ଧା
ଜାତ କରି ଦେବ ହସ୍ତେ ମରାଅ ସର୍ବଦା ।
ତୁମ୍ଭେ ତ ଆମ୍ଭର ପିତା ମାନୁଛୁ ନିଶ୍ଚିତ
ଦେଖିବା ସମର କରୁ ଆସି ଜଗନ୍ନାଥ ।
ତାଠାକୁ ନ ଯାଇ କର୍ମା ତୁମ୍ଭଠାକୁ ଗଲା
ଯେବେ ଆସନ୍ତା ଦେଖନ୍ତ ଥରେ ମାର ଭଲା ।
ପୂର୍ବେ ଭାଇଙ୍କି ମୋହର ସେହୁ ଅଛି ମାରି
ସେହି କଥା ପାଶୋରନ୍ତ ତାକୁ ବଧ କରି ।
ତୁମ୍ଭେ ଏବେ ଧାଇଁଅଛ ଅଦିତିର ପାଇଁ
ହିତ ଧୃବ ମୁହିଁ ବୋଲେ କାହିଁ ନ ହେଲଇଁ ।
ତୁମ୍ଭେ ତ ଠାକୁର ମୋର ପ୍ରାଣ ପଞ୍ଚଭୂତ
ତୁମ୍ଭ ସଙ୍ଗରେ କସ ମୁଁ କରିବ ଅନର୍ଥ ।
ଏମନ୍ତ କହି କୋପରେ ପାଶୁ ଉଠିଗଲା
ସୈନ୍ୟ ସଜ ହୁଅ ବୋଲି ଆଦେଶ କରିଲା ।
ପିତା କହିଲେ ଏଠାରୁ ଯିବା ନିଜ ପୁର
ସେ ଏବେ ଏଠାକୁ ଆସି ହେଉ ପୁରନ୍ଦର ।
ପିତାଙ୍କୁ ବୃହିଁଣ ପୁଣି ବୋଲଇ ଦଇତ
ଯେଉଁ ଦ୍ରବ୍ୟ ଦେଇଅଛୁ ନଦେବୁ କଶ୍ଚିତ ।

ତାହା ସବୁ ଫେଣ ଦେଲେ ମୂର୍ତ୍ତି ତ ନ ଯିବ
ମୁଁ ଯେବେ ତୁମ୍ଭର ପୁନ କର୍ମ ନ ପାଳିବ ।
ମୁନି ବୋଇଲେ ଶୁଣରେ ଅବୋଧ ବାଳକ
ଔବ୍ରତ ଉପସର୍ଗ ଅନନ୍ତ ଯେତେକ ।
ଏ ଅଟନ୍ତି ସ୍ୱର୍ଗଲୋକ ଏ ଦୁଷ୍ଟଙ୍କି ଘୁଡ଼
ଆଜ ଯା ଯେନନ୍ତୁ କଏ ଆଣୁଛୁ ବାହୁଡ଼ି ।
ଏମନ୍ତ ଶୁଣି କୁମର ସନ୍ତୋଷ ହୋଇଲା
ପିତାର ଚରଣେ ଯାଇ ନମସ୍କାର କଲା ।
ବାଦ୍ୟ ବାଜଣା ବଜାଇ ଗଲା ନିଜପୁରେ
କଟକେ ପ୍ରବେଶ ହେଲା ଅତି ସମ୍ଭ୍ରମରେ ।
ଆସ୍ଥାନ ଉପରେ ଯାଇ ବସିଲାକ ବୀର
ସୈନ୍ୟ ସାମନ୍ତ ଚଳିଲେ ଯେ ଯାହା ମନ୍ଦିର ।
ସ୍ୱର୍ଗଠାରୁ ବଦାସ୍ତ ହୋଇଲା ଅସୁର
ନିଜ ପୁରକୁ ଚଳିଲା ଅତ୍ୟନ୍ତ ବିରସ ।
ଯହୁଁ ସକଳ ଅସୁର ନିଜପୁରେ ଗଲେ
କଶ୍ୟପ ମହିତମନା ସେଠାରୁ ଅଇଲେ ।
ଆପଣ ଭୁବନେ ଆସି ହୋଇଲେ ପ୍ରବେଶ
ଇନ୍ଦ୍ର ଦେବତାକୁ ଶୁଣି ହେଲେ ହସ ହସ ।
ତୁମ୍ଭ ଏବେ ଚଳଯାଅ ତୋ ଅମରାବତୀ
ତୋ କଟକେ ରହ ଯାଇ ହୋଇ ତୋଷମତି
ତାହାକୁ ପ୍ରବୋଧ ମୂର୍ତ୍ତି ଦେଲା ପଠିଆଇ
ପଦାର୍ଥ ନେଇଛୁ ଯାହା ତାହା ଦେବ ନାହିଁ ।
ଅପସରା ଔବ୍ରତ ରଖିଲା ମୁଁ କହି
ମୋହର ବଚନେ ସେହୁ ଗଲା ଛାଡ଼ି ଦେଇ ।
ତାହାଶୁଣି ଇନ୍ଦ୍ରଦେବ ସନ୍ତୋଷ ହୋଇଲେ
କାଶ୍ୟପ ଚରଣେ ଯାଇ ପ୍ରଣିପାତ କଲେ ।
ମସ୍ତକରେ କରଯୋଡ଼ି ଉଠିଲେ ବନ୍ଦନ
କାଶ୍ୟପ ବୋଇଲେ ଏବେ ଯାଅରେ ନନ୍ଦନ ।
ଦେବଗଣେ ସର୍ବେ ଆସି ସେଠାରେ ରହନ୍ତୁ ।
ମୋର ଥାନେ ତାକୁ ଆଉ ଭୟ ନ କରନ୍ତୁ ।
ସ୍ୱର୍ଗପୁର ବୋଲି ଆଉ ନ ଧଇବ ଚିତ୍ତ
ମୁଁ ତାଙ୍କୁ ବିଶ୍ୱାସ ଦେଇ କହିଅଛି କେତେ ।
ଅଇଲେ ମୋର ପୁରକୁ ସେ ବେନି ଆସିବେ
ତୁମ୍ଭମାନଙ୍କ ପାଖକୁ କଦାଚ ନ ଯିବେ ।
ପିତାଙ୍କ ମୁଖରୁ ଏମନ୍ତ କଥା ସବୁ ଶୁଣି
ସ୍ୱର୍ଗକୁ ବାହାର ହେଲେ ତହୁଁ ବଜ୍ରପାଣି ।

ଦେବତାମାନଙ୍କ ଆଗେ ସମସ୍ତ କହିଲେ
ପିତା ତାଙ୍କୁ ବାହୁଡ଼ାଇ ଦେଲେ ଭଲେ ଭଲେ
ଶୁଣି ଦେବତାଏ ତାଙ୍କୁ ସାଧୁବାଦ କଲେ
ଏତେ ଦିନକୁ କାଶ୍ୟପ ଭଲ ନିର୍ବାଇଲେ ।
ତାଙ୍କର ଅନିଷ୍ଟ ଯେଣୁ ସେମାନେ ଧନନ
ଧୋଣୁକର ଶାନ୍ତ ହେଲେ ଦେନ ଦୁଷ୍ଟଜନ ।
ଆନନ୍ଦେକ ହୋଇଥିଲେ କର୍ମ ସେ ଯାଆନ୍ତେ
ପୁଣିକି କାଶ୍ୟପ ମୁନି କାହିଁକ ନହନ୍ତେ ।
ଆମ୍ଭର ସଙ୍ଗତେ ସେହୁ ହୋଇଥାନ୍ତି ଜଣେ
ଆମ୍ଭେ ଯେତେହ୍ଲେ ଲୁଚିଥିଲୁ ଯାଇ ଏଣେତେଣେ
ଭଲ ସେ ପିତା ବଚନ ମାନିଲେ ଦୁଷ୍ଟ
ଉଶ୍ୱାସ ହୋଇଲା ସ୍ୱର୍ଗୁ ଯିବାରୁ ପାପିଷ୍ଠ ।
ଏମନ୍ତ କହି ମୁନିଙ୍କୁ ପ୍ରଶଂସା କରିଲେ
ସେ ଯହା ଗୃହକୁ ଆସି ନିଶ୍ଚଳେ ରହିଲେ ।
ସ୍ୱର୍ଗିନାର ଘର ସବୁ ତୋଳିଲେ ବଖାଣି
ଗୃହରେ ରହିଲେ ଇନ୍ଦ୍ର ସହିତ ଇନ୍ଦ୍ରାଣୀ ।
ବୃଥା କଥାରେ ରସନା ଆଉ ତୁ ରସନା
ହରେରାମ କୃଷ୍ଣ ସଦା କର ତୁ ରଟନା ।
ଆୟୁ ସୂର୍ଯ୍ୟ କ୍ରମେ କ୍ରମେ ହେଉଅଛି ଅନ୍ତ
ଦିନେ ନ ବୋଇଲୁ ହରି ସଦା କାର୍ଯ୍ୟେ ବ୍ୟସ୍ତ
ଜାଣୁନାହିଁ କ ପାମର ଆସୁଛି ଶମନ
ଦିନେ ତୋ ଟଣ୍ଟି କ ଧରି ଯେନିବ ଜୀବନ ।
ବାନ୍ଧି ଠିଆ କରିଦେଲେ ଧର୍ମ ନିକଟରେ
କିସ କହିବୁ ସେକାଳେ ଭାବୁ କ ମନରେ ।
କେତେ ଘର ବୁଡ଼ାଇଛୁ ମିଛକଥା କହି
କେତେ ଘର ବୁଡ଼ାଇଛୁ ଅର୍ଥଲୋଭୀ ହୋଇ ।
କେତେ ଜୀବ ମାରିଅଛୁ ତୋହର ଲାଳସେ
କେତେ ଅକୃତଜ୍ଞ ହେଲୁ ଉପକାରୀ ପାଶେ ।
କେତେ ଛନ୍ଦମନ୍ଦ କରୁ ତୋର ପ୍ରୀତି ଆଶେ
କଣ୍ଟନାହୁଁ କହିବୁ କ ମିଛ ତାଙ୍କ ପାଶେ ।
ଏଠାରେ ଭଣ୍ଡାଇ ଦେଇ ହୋଇଲୁ ଉଦ୍ଧାର
ସେ ଧର୍ମ ଦେଖୁଛନ୍ତି ବସି ତୋର ବ୍ୟବହାର ।
ସେଠାରେ ସାକ୍ଷୀ ଓକିଲ କୌଣସି ନ ଥିବେ
ବନ୍ଧୁ, ଦାରା, ସୁତ, ଭ୍ରାତା ସଙ୍ଗତେ ନ ଯିବେ
ଏଥିପାଇଁ ଆରେ ମୂଢ଼ କହୁଅଛି ଶୁଣ
କଳିକାଳେ ଜଗନ୍ନାଥ ନାମଟି ପ୍ରମାଣ ।

ସେହିନାମ ସଦାକାଳେ ଘୋଷୁଥାଅ ବସି
କି କରିବ ଯମରାଜା ଧରି କାଳଫାଶି ।
ସେ ନାମ ତୋହି ବିଷ୍ଣୁ ବିଷ୍ଣୁ ତୁଣ୍ଡ ଗଦ
ଜାମପାନେ ନାରାୟଣ ଦେବେ ମୋକ୍ଷପଦ ।

—୦—

## ହିରଣ୍ୟ ନିକଟରେ ଶୁକ୍ରଙ୍କର ପ୍ରବେଶ ମର୍ତ୍ତ୍ୟ ଓ ପାତାଳ-ପୁରକୁ ଦିଗ୍‌ବିଜୟ

ଶୁକ ମୁନିଙ୍କ ଚରଣେ ପରୀକ୍ଷି ରାଜନ
ଧୂପ ଦୀପ ନଇବେଦ୍ୟ କୁସୁମ ଚନ୍ଦନ ।
ନବବସ୍ତ୍ର ଅଳଙ୍କାର ନେଇଣ ଥୋଇଲେ
ବିଧି ବିଧାନରେ ତାଙ୍କ ପାଦ ପୂଜାକଲେ ।
ବୋଇଲେ ହେ ମୁନିରାଜ ତୁମ୍ଭ ପ୍ରସାଦରେ
ବରାହ ପୁରାଣ ମତ ଶୁଣିଲି କର୍ଣ୍ଣରେ
ସବୁ ପୁରାଣର ସାର ଅଟେ ଏ ପୁରାଣ
ପାପତାପ ଧ୍ୱଂସ ହୁଏ କଲେ ଶ୍ରବଣ ।
ପିତା ଆଦେଶେ ହିରଣ୍ୟ ଜିଣି ସ୍ୱର୍ଗପୁର
ଆପଣା କଟକେ ଯାଇ ରହେ ପୁନର୍ବାର
ତଦନ୍ତରେ କେଉଁକଥା କଲା ସେ ରାକ୍ଷସ
ସେହିକଥା ଶୁଣିବାକୁ ବଳେ ମୋ ମାନସ ।
କହନ୍ତି ଶ୍ରୀ ଶୁକ ମୁନି ଶୁଣ ନୃପବର
ତଦପରେ ଯାହା ହେଲା ସେହି ସମାଚାର ।
ସ୍ୱର୍ଗରେ ନିର୍ଭୟ ହୋଇ ରହି ପୁରନ୍ଦର
ନୃତ୍ୟ ଗୀତ କଲେ ପୁଣି ଥିଲା ଯେ ପ୍ରକାର ।
ଦିତି କାଶ୍ୟପଙ୍କୁ ଡାକି ଗୋପନେ ପୁଚ୍ଛନ୍ତି
କେମନ୍ତେ ସନ୍ତୋଷ କଲା ହିରଣ୍ୟର ମତି ।
ସେ ବୋଇଲେ ପିତାପାଇଁ ନ ଥିଲା ତା ମନ
ମୋତେ ବୋଇଲା ଏଠାରେ ହେବ ମଘବାନ
ମୁଁ ବୋଇଲି ଇନ୍ଦ୍ର ପଦେ ସୁଖ ନ ମିଳଇ
ସବୁକାଳେ ନାନା ଦୁଃଖ ଆସି ଘଟୁଥାଇ ।
ଗନ୍ଧର୍ବ କିନ୍ନର ପୁଣ ତୋର ସଙ୍ଗେ ଥାନ୍ତେ
ବ୍ରହ୍ମା ଆସି ଗୁରୁବେଦ ତୋ ଆଗେ ପଢ଼ନ୍ତେ
ନାରାୟଣ ସଙ୍ଗେ ଥାନ୍ତା ତୋର ସଦଭାବ
ତେବେ ସିନା ଇନ୍ଦ୍ରପଦ ହୁଅନ୍ତା ସୁଲଭ ।
ବଳେ ଇନ୍ଦ୍ରପଦ ନେଲେ ଶର ହୁଏ ନାହିଁ
ମୋର ବୋଲ କରି ଯାଅ ତୋ କଟକେ ତୁହି
ଏମନ୍ତ କହନ୍ତେ ଶୁଣି ହେଲା ରୋଷ ଚିତ୍ତ
ବୋଇଲା ଯାହା ନେଇଛି ନ ଦେବି କିଞ୍ଚିତ ।
ମୁଁ ବୋଇଲି ଯା ନେଇଛୁ ତାହା ତୁ ନ ଦିଅ
ଶୀଘ୍ରଚିତ ଅପଯଶ ଦୂର ଗୁଡ଼ ଦିଅ ।
ଶୁଣି ଆନନ୍ଦିତ ହୋଇ ନମସ୍କାର କଲା
ସୈନ୍ୟବଳ ଘେନି ନିଜ କଟକେ ଅଇଲା ।
ତାହା ଶୁଣି ଦିତିଦେବୀ ହୋଇଲେ ମଉନ
କିଛି ନ କହି ସେଠାରୁ କଲେ ପ୍ରସ୍ଥାନ ।
ସ୍ୱର୍ଗପୁର ଜୟ କରି ଆସିଲା ଦଇତ
ସେହିଠାରୁ ଏକବର୍ଷ ହୋଇଲା ଅତୀତ ।
ଏକଦିନେ ଶୁକ୍ର ଗୁରୁ ତା ପୁରେ ଅଇଲେ
ସିଂହଦ୍ୱାର ଦେଶରେ ସେ ଆସି ଉଭାହେଲେ ।
ଦ୍ୱାରୀକ କହିଲେ କୁହ ରାଜାପାଶେ ଯାଇଁ
ସିଂହଦ୍ୱାରେ ଶୁକ୍ରଗୁରୁ ଛନ୍ତି ଉଭା ହୋଇ ।
ଶୁକ୍ରଙ୍କ ବଚନେ ଦ୍ୱାରୀ ବେଗେ ଚଳିଗଲା
ଶୁକ୍ର ଆସିଛନ୍ତି ବୋଲି ରାଜାଙ୍କୁ କହିଲା ।
ହିରଣ୍ୟ ବୋଇଲା ତାଙ୍କୁ ଶୀଘ୍ର ଆଣ ଯାଇ
ତାହା ଶୁଣି ଦ୍ୱାରପାଳ ଗଲା ବେଗ ହୋଇ ।
ସେ ତାଙ୍କୁ ବୋଇଲା ରାଜା ଆଜ୍ଞା ହେଲା ଆସ
ଶୁଣି ଭିତରକୁ ଗଲେ ଭୃଗୁଙ୍କର ଶିଷ୍ୟ ।
ରାଜସଭାରେ ପ୍ରବେଶ ହୋଇଲେ ସେ ଯାଇ
ଦେଖି ନମସ୍କାର କଲା ଦୈତ୍ୟେନ୍ଦ୍ରର ସାଇଁ ।
ସକଳ ଦଇତମାନେ ଓଳଗି ହୋଇଲେ
ଆଦର କରି ଆସନେ ନେଇ ବସାଇଲେ ।
ଦୈତ୍ୟକୁ ଅନାଇଁ ଶୁକ୍ର ବୋଲନ୍ତି ବଚନ
ସବୁ ତ କୁଶଳ ଅଟେ ତୁମ୍ଭର ରାଜନ ।
ହିରଣ୍ୟ ବୋଇଲା ଦେବ ତୁମ୍ଭ ପରସାଦେ
ଆଜ ପର୍ଯ୍ୟନ୍ତେ ମୁହିଁ ଅଛି ଅପ୍ରମାଦେ ।
କେଉଁ କାର୍ଯ୍ୟେ ଆଗମନ କଲ ବ୍ରହ୍ମର୍ଷି
କହନ୍ତି ଶୁକ୍ର ତୁମ୍ଭେ ହେ ଶୁଣ ଦଣ୍ଡଧାରୀ ।
ଆଦ୍ୟକାଳେ ରହିଥିଲେ ଯେତେକ ରାକ୍ଷସ
ସେମାନେ ସକଳେ ଥିଲେ ଆମ୍ଭରହିଁ ଶିଷ୍ୟ ।

ତୁମ୍ଭ ଏବେ ନରପତି ହେଲୁ ମହୀତଳେ
ଆମ୍ଭଙ୍କୁ ବର୍ଣ୍ଣିଲୁ ନାହିଁ ଥରେ ମାତ୍ର ହେଳେ ।
ତୁମ୍ଭ ଏବେ ସ୍ୱର୍ଗପୁର କଲୁ ସ୍ୱତ୍ୱ ମୂଳ
ତାହା ଶୁଣି ଆନନ୍ଦ ହେଲୁ ଦଣ୍ଡଧାରୀ ।
ଭଲକଲ ପିତା ବାକ୍ୟ ପାଳନ କରିଲୁ
ଚନ୍ଦ୍ରପଦ ଦେଇ ତାଙ୍କୁ ବାହୁଡ଼ି ଆଇଲୁ ।
ପିତୃଭକ୍ତ ବୋଲି ତୋତେ ପ୍ରଶଂସିଲେ ଲୋକେ
ତୋର ମହିମା ବିଖ୍ୟାତ ହେଲା ତିନିଲୋକେ ।
ତାହା ଶୁଣି ହିରଣ୍ୟ ମହାକ୍ରୋଧ ହେଲା
ତୁମ୍ଭେ କାହିଁକି ଆସିଛ ବୋଲି ପଚାରିଲା ।
ଶୁକ୍ର ବୋଇଲେ କହିବୁଁ ଆଜ ତୋତେ କସ
ଆମ୍ଭେ ଇଚ୍ଛି ଥିଲୁଁ ତୋତେ କରିବାକୁ ଶିଷ୍ୟ
କାଶ୍ୟପ ହୋଇଅଛନ୍ତି ତୋର ପିତା ଗୁରୁ
ଆମ୍ଭେ କି ତାହା ଅନ୍ୟଥା କରିବାକୁ ପାରୁ ।
ଆମ୍ଭେ ତୋତେ କିଛି ଶାସ୍ତ୍ର ଆଜ ପଢ଼ାଇବୁଁ
ବିଦ୍ୟାଗୁରୁ ହୋଇ ତୋର ପାଶେ ରହିଥିବୁଁ ।
ଦୈତ୍ୟ ବୋଲେ ପଢ଼ିବାକୁ କେଉଁ ଶାସ୍ତ୍ର ଅଛି
ବିଷ୍ଣୁପୁରାଣ ପଢ଼ିବୁ ତାହା ମୁଁ କହୁଛି ।
ହିରଣ୍ୟ ବୋଇଲା ତାହା ମୁଁହି ନ ପଢ଼ଇ
ଶିବପୁରାଣ ପୋଥିକି ପାର କି ଭିଆଇ ।
ଶୁଣିକରି ଶୁକ୍ର ଗୁରୁ ସମ୍ମତ କଲେ
ସେ ପୁରାଣ ପଢ଼ାଇବ ବୋଲିଣ ବୋଇଲେ ।
ଏମନ୍ତ ଶୁଣି ହିରଣ୍ୟ ଆନନ୍ଦ ହୋଇଲା
ଶୁକ୍ରଙ୍କୁ ଦ୍ରବ୍ୟ ପ୍ରତେକ ତହୁଁ ନେଇ ଦେଲା ।
ସେ ପୁରରେ ଶୁକ୍ରଗୁରୁ ସୁଖରେ ରହିଲେ
ହିରଣ୍ୟ ଶିବ ପୁରାଣ ତାଙ୍କଠୁଁ ପଢ଼ିଲେ ।
ଏହିରୂପେ ତହିଁ ପୁଣି କେତେଦିନ ଗଲା
ସନ୍ତୋଷ ହୋଇ ଶୁକ୍ରଙ୍କୁ ମନ୍ତ୍ରିପଣ ଦେଲା ।
ଏଥିଅନ୍ତରେ ତୁମ୍ଭେ ଶୁଣ ନୃପସାଇଁ
ଦିନେ ହିରଣ୍ୟ ବୋଇଲା ସଭାକୁ ଅନାଇ ।
ଦିଗବିଜେ କରିବାକୁ ଚାଲ ବସୁନ୍ଧରୀ
ତହିଁ ରାଜାଙ୍କୁ ଜିଣିବା ଏକ ଏକ କରି ।
ଶୁଣି ସକଳ ଅସୁର ସମ୍ମତ କଲେ
ରଥ ଗଜ ପଦାତିକ ନେଇ ବାହାରିଲେ ।
ବାଜେ ସୀରତୁର ବାଜା ଟମକ ନିଶାଣ
ସଜ ହେବାକୁ ବାହାରେ ଦୈତ୍ୟ କୁଳଗଣ ।

ମସ୍ତକେ ମୁକୁଟ କର୍ଣ୍ଣେ କୁଣ୍ଡଳ ଭୂଷଣ
ବାହୁରେ ବାହୁଟି ମୁଣ୍ଡି ହସ୍ତରେ କଙ୍କଣ ।
ଦଶ ଅଙ୍ଗୁଳିରେ ଦଶ ମୁଦ୍ରିକା ଶୋଭନ
ହୃଦୟରେ ରତ୍ନମାଳା ଦିଶଇ ଯତନ ।
ତହିଁରେ ଭ୍ରୂକୁଟି ମାଳ ଜଳେ ଘର ଘର
ଚରଣେ ବାନ୍ଧିଲା ନେଇ ମର୍କଟ ତୋଡର ।
କରେ ଧନୁ ଧରି ଯାଇ ରଥରେ ବସିଲା
ହିରଣ୍ୟାକ୍ଷକୁ ଗର୍ଜ୍ଜିଣ ବଚନ ବୋଇଲା ।
ମୁଁ ପୃଥ୍ୱୀ ବୁଲିଯାଇ ଆସୁଛି ବହନ
କଟକକୁ ରକ୍ଷାକରି ହୋଇ ସାବଧାନ ।
ରାଜାର ଆଦେଶ ଶୁଣି ହିରଣ୍ୟାକ୍ଷ ବୀର
ବୋଇଲା ତୁମ୍ଭର ଆଜ୍ଞା ଶିରୋଧାର୍ଯ୍ୟ ମୋର
ମିଳାଇଲେ ଶୁକ୍ରମନ୍ତ୍ରୀ ସଙ୍ଗତରେ ସେନା
ହିରଣ୍ୟ ବାହାର ହେଲା ତୁଳିବ ମେଦିନୀ ।
ରଥ ଗଜ ପଦାତିକ ସଙ୍ଗେ ଅପ୍ରମିତ
ବାଦ୍ୟ ମୁଖରୋଳେ ପୂର୍ଣ୍ଣ ହୁଏ ତ୍ରିଜଗତ ।
ଶଇଳ ଦେଶକୁ ଗୁଡ଼ି ଅଇଲେ ଅସୁରେ
ପ୍ରବେଶ ହୋଇଲେ ପ୍ଲକ୍ଷ ଦେଶର ଭିତରେ ।
ତହିଁର ନୃପତି ନାମ ଚନ୍ଦ୍ରକେତୁ ବୀର
ତାହାର ରାଜ୍ୟେ ମିଳିଲା ଯାଇଣ ଅସୁର ।
ଚର ଜଣାଇଲା ଯାଇ ରାଜାର ସମ୍ମୁଖରେ
ହିରଣ୍ୟ ଦଇତ ରାଜା ଆସିଲା ଏଠାରେ ।
ଶୁଣିକରି ନରପତି ତ୍ରସ୍ତ ହୋଇଲା
ପାତ୍ର ମନ୍ତ୍ରୀଙ୍କି ଅନାଇ ବଚନ ବୋଇଲା ।
ଯେଉଁ ହିରଣ୍ୟ ଅସୁର ଜିଣେ ପୁରନ୍ଦର
ତାହାର ଆଗରେ କିଏ କରିବ ସମର ।
ପାତ୍ର ମନ୍ତ୍ରୀଏ ବୋଇଲେ ପ୍ରବୋଧ କରିବା
ଏଥିକୁ ତୁମ୍ଭ ବିସ୍ମର ନାହିଁ ନ କରିବା ।
ନୃପତି ବୋଇଲେ ତୁମ୍ଭେ ଆଣ ଉପହାର
ଆଜ୍ଞାମାନେ ମନ୍ତ୍ରୀ ଆଣେ ସକଳ ସମ୍ଭାର ।
ନାନା ବସ୍ତ୍ର ଅଳଙ୍କାର ସେନାଣ ସଙ୍ଗରେ
ପ୍ରବେଶ ହୋଇଲା ରାଜା ହିରଣ୍ୟ ସମ୍ମୁଖରେ ।
ଭେଟି ଦ୍ରବ୍ୟ ତଳେ ଥୋଇ ନମସ୍କାର କଲା
ଦେଖି ହିରଣ୍ୟ ତାହାକୁ ଗୌରବ କରିଲା ।
ମେଲାଣି ଦିଅନ୍ତେ ଗଲା ଆପଣାର ପୁର
ତହୁଁ ଚଳିଲା ହିରଣ୍ୟ ସେନାଣ ସମ୍ଭାର ।

କୁମୁଦ ଦେଶକୁ ଜିଣି ଦ୍ରାବିଡ଼େ ମିଳିଲା
ତାହାକୁ ଜିଣିଣ ଘୋର କାମ୍ବୋଜକୁ ଗଲା ।
କାଶୀପୁର ଜିଣି ପୁରୀ ମାଳବେ ପ୍ରବେଶ
ବାଦ୍ୟ ଶବଦେ କମ୍ପିଲା ତର୍ଜି ଦଶଦିଶ ।
ସେ ନଗର ରାଜା ନାମ ଭ୍ରମର ନୃପତି
ବାନ୍ଧି ତାକୁ ମନମଧ୍ୟେ କରିଲା ସେ ଶାନ୍ତି ।
ବୋଧଶୋଧ କରି ସେହୁ ବାହୁଡ଼ାଇ ଦେଲା
ସେହିଠାବରୁ ହିରଣ୍ୟ ଦକ୍ଷିଣକୁ ଗଲା ।
ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣାଦି କରି
ସମସ୍ତ ରାଜା ଜିଣିଲା କୌଣପାଧିକାରୀ ।
ସତ୍ୟବ୍ରତ ରାଜ୍ୟ ପଶି ତାକୁ କଲା ଜୟ
ପୃଥ୍ବୀରେ ଆତ ଉତ୍ଥାନ କଲା ଦିଗ୍‌ବିଜୟ ।
ପୃଥ୍ବୀରେ ଉପଦ୍ରବ କରିଲା ବହୁତ
ସ୍ବର୍ଗେ ଦେବତାଏ ଦେଖି ହୋଇଲେ ଚିନ୍ତିତ ।
ଏକସ୍ଥାନେ ବସି ସର୍ବେ କରନ୍ତି ବିଚାର
କାଶ୍ୟପଙ୍କ ପୁତ୍ର ଏବେ ନାଶିଲେ ସଂସାର
କେବଳ ପ୍ରଜାକୁ ଧରି ପ୍ରାଣରେ ମାରନ୍ତି
କେଉଁ ରାଜ୍ୟ ଅଗ୍ନି ଦେଇ ପୋଡ଼ି ପକାବନ୍ତି ।
କେହୁ ଶରଣ ପଶନ୍ତି ରତ୍ନ ବସ୍ତ୍ର ଦେଇ
ଯେ ସମର କରେ ତାକୁ ପ୍ରାଣରେ ମାରଇ ।
ଋଷି ବ୍ରାହ୍ମଣଙ୍କୁ ଧରି ଭକ୍ଷନ୍ତି ଅସୁରେ
ଗୋରୁ ମନୁଷ ପ୍ରଜାଙ୍କୁ ରଖନ୍ତି ଉଦରେ ।
ଭୟେ ଥରହର ହୋଇ କମ୍ପନ୍ତି ଆକୁଳେ
ଦଶଯୋଜନ ଦୂରରୁ ପଳାନ୍ତି ସକଳେ ।
ଏହି ପରକାରେ କରି ଜିଣିଲା ସଂସାର ।
କହନ୍ତି ଶ୍ରୀ ଶୁକମୁନି ଶୁଣ ନୃପବର ।
ହିରଣ୍ୟ ସଙ୍ଗ ଅସୁର ନାଶ କଲେ ସୃଷ୍ଟି
ସେହିକାଳୁ ନର ଭକ୍ଷ ହୋଇଲେ ପାପିଷ୍ଠୀ ।
ମର୍ତ୍ତ୍ୟପୁର ଜୟ କରି ପାତାଳକୁ ଗଲେ
ବାସୁକି ଭୁବନେ ଯାଇ ପ୍ରବେଶ ହୋଇଲେ
ଯାଇ ଦେଖେ ବାସୁକିର ଅପୂର୍ବ ମୂରତି
ପୁତ୍ର ନିରୂପଣ କରି ପୁଚ୍ଛେ ଯାଇ କତି ।
ଛଳରେ ବାସୁକି ବୋଲେ ଯାହା ଶୁଣୁ ଏହି
ବସୁନ୍ଧରକୁ ଏ ପୃଥ୍ବୀ ମୁଣ୍ଡେ ଅଛି ବହି ।
ଏମନ୍ତ ବଚନ ବୋଲେ ସେ ହିରଣ୍ୟ ବୀର
ସାବଧାନ ହୋଇ ଏବେ ଶୁଣ ମହୀଧର ।

ମୁଁ ଅଟେ ହିରଣ୍ୟ ରାଜା କଶ୍ୟପ ନନ୍ଦନ
ସ୍ବର୍ଗେ ପଶି ଜୟ କଲି ଦେବ ମଘବାନ ।
ମର୍ତ୍ତ୍ୟପୁରରେ ରାଜାଙ୍କୁ ମୁଁ ଜିଣିଲିଁ ଧରି
ମୋର ସଙ୍ଗେ ରଣ ରଙ୍ଗ ପାରିବୁ କି କରି ।
ବାସୁକି ବୋଇଲେ ଶୁଣି ଶୁଣ ମହାବୀରୁ
ଦେଖୁ ନାହିଁ କି ମୋ ଶିରେ ଅଛି ଚରାଚର ।
ତୋର ସଙ୍ଗରେ ସମର କରିବି କେମନ୍ତ
ଛାଡ଼ିଲେ ମହୀ ପଡ଼ିବ ହୋଇ ରସାଗତ ।
ଯେଉଁ କଥାକୁ ବିମୃଶ ବାହୁଡ଼ିଣ ଯାଅ
ତୁ ମୋର ପୁତୁରା ଯେଣୁ କାଶ୍ୟପଙ୍କ ପୁଅ ।
କାଶ୍ୟପ ମୁନି ଅଟନ୍ତି ମୋର ସାନଭାଇ
ଏହିକଥା ସବୁ ବାବୁ ନ ଜାଣୁକି ତୁହି ।
ଏକ ପିତାଠାରୁ ଆମ୍ଭେ ହୋଇଅଛୁଁ ଜାତ
ଏହା ବିଚାରି ତୁ ଛାଡ଼ି କ୍ରୋଧ କୋପ ଚିତ୍ତ ।
ହିରଣ୍ୟ ବୋଇଲା ମୋତେ ରତ୍ନ କିଛି ଦିଅ
ସମର ନ କରି ଏବେ ମହୀ ଧରିଥାଅ ।
ତା ବାକ୍ୟ ବାସୁକି ରତ୍ନ ଅଣାଇଣ ଦେଲେ
ତାହା ଘେନିଣ ହିରଣ୍ୟ ତହୁଁ ବାହାରିଲେ ।
ପାତାଳ ଭ୍ରମଣ କରି ରସାତଳେ ଯାନ୍ତି
ଜାଣି ଶ୍ରୀପତି ସେଠାରୁ ଅନ୍ତର ହୁଅନ୍ତି
କାହାକୁ ନ ଦେଖି ତହିଁ ଅଇଲା ଦଇତ
ପାତାଳ ଭୁବନଯାକ ଜିଣିଲା ସମସ୍ତ ।
ସେହିକ୍ଷଣି ପାତାଳରୁ ହୋଇଲା ବାହାର
ରଥଗଜ ପଦାତିକ ସହିତ ତାହାର ।
ଅନ୍ତରୀକ୍ଷମାର୍ଗ ଦେଇ ସର୍ବେ ଉଡ଼ିଗଲେ
ଆପଣା କଟକେ ଯାଇ ପ୍ରବେଶ ହୋଇଲେ ।
ସମସ୍ତେ ନିଜ କଟକେ ପ୍ରବେଶିଲା ଯାଇ
ଜଗତି ଉପରେ ପୁଣି ବସେ ତୋଷ ହୋଇଁ ।
ଆଣିଲା ପଦାର୍ଥମାନ ଥୋଇଲା ଭଣ୍ଡାରେ
ରଥଗଜ ସୈନ୍ୟଗଲେ ଯେ ଯାହା ଆଳରେ
ମାର୍ଜନା ମଣୋହି ସାରି ହିରଣ୍ୟ ଅସୁର
ଆସ୍ଥାନ ଜଗତିପରେ ବସେ ପୁନର୍ବାର ।
ଆସ୍ଥାନ ତଳରେ ସୈନ୍ୟ ଥାଆନ୍ତି ହୋଇ ମେଳ
ମଦରାପାନରେ ସର୍ବେ ହୋଇ ମତୁଆଳ ।
ଦୁନ୍ଦୁଭି ମର୍ଦ୍ଦଳ ବଂଶୀ ବଜାନ୍ତି ଅସୁରେ
ନୃତ୍ୟ ରଙ୍ଗ କରୁଥାନ୍ତି ହିରଣ୍ୟ ଛାମୁରେ ।

ମାଳ ସ୍ତମ୍ଭମାନ ପୋତା ରହିଛି ସେଠାରେ
ଅସୁରମାନେ ବନ୍ଧାଣ କରନ୍ତି ନର୍କରେ ।
କହନ୍ତି ଶ୍ରୀ ଶୁକମୁନି ଶୁଣ ହେ ରାଜନ
ଅସୁର ହିରଣ୍ୟକଶ୍ୟପୁ ହେଲ ସମାପନ ।
ଆରେ ମନ କର୍ମ କରୁ ଏ ଦେହ ଗୁମାନ
ଜାଣି ଶୁଣି ହେଉ କର୍ମ ପୁଣି ଅଜ୍ଞାନ ।
ଯେବେ ପ୍ରାଣ ଘୁଞ୍ଚିଯିବ ଏ ଦେହରୁ ତୋର
କେହି ନ ଛୁଇଁବେ ଆଉ କରି ଅନାଦର ।
ଯେ ଦେହକୁ ମଣ୍ଡିଅଛୁ ନାନା ଅଳଙ୍କାରେ
ପଚି ଦୁର୍ଗନ୍ଧ ହେବ ତା ପୋଡ଼ିବ ଅଗ୍ନିରେ ।
କି ଅବା ଶ୍ୱାନ ଶୃଗାଳ ବେଢ଼ି ତୋର ପିଣ୍ଡ
ଖାଉଥିବେ ରକ୍ତମାଂସ କରି ଖଣ୍ଡ ଖଣ୍ଡ ।
ଦେଖୁ ଯେତେ ଚରାଚର ସକଳ ଅଚିର
ଦାରା ସହିତେ ସୁତ ସେ ନୁହଇ ତୋର ।
ଜନମି ଜନମି ମର୍ତ୍ତ୍ୟ ମାୟାରେ ଭୁଲିଲୁ
ହିନେ ଜଗନ୍ନାଥ ବୋଲି ଭ୍ରମେ ନ ଧଇଲୁ ।
ଉଦ୍ଧାର ପଥରେ କଣ୍ଟା କଲୁ ତୁ ରୋପଣ
କେମନ୍ତେ ଭବସାଗରୁ ହେବୁ ପରିତ୍ରାଣ ।
ଅତଏବ ହେଳନ କରୁଅଛୁ ତୋତେ
ହରେ ରାମକୃଷ୍ଣ ମୁଖେ ଭଜ ତୁ ନିରତେ ।
ଯେବେ ଦୟାକର ନାମେ କର ତୁ ବିଶ୍ୱାସ
କଳିଯୁଗେ ଏହି ଧର୍ମ ଶାସ୍ତ୍ରରେ ପ୍ରକାଶ ।
ତୋତେ ନେବାପାଇଁ ଯତ୍ନ କରୁଥିବ ଯମ
କଲ୍କି ଛଳା ଦେଇ ତାକୁ ଯିବୁ ନିତ୍ୟଧାମ ।
କହେ ନାରାୟଣ ଚନ୍ଦ୍ର ଆଉ କାମପାଳ
ଜଗନ୍ନାଥ ନାମ ରଟ ରସନା କେବଳ ।

———

## ହିରଣ୍ୟାକ୍ଷର ମର୍ତ୍ତ୍ୟ ପାତାଳପୁରେ ଭ୍ରମଣ ଓ ବାସୁକୀ ମସ୍ତକରୁ ପୃଥିବୀ ଛଡ଼ାଇ ନେବା ଏବଂ ନାଗବଳଙ୍କ ସହିତ ଯୁଦ୍ଧ ।

ଏଥିଅନ୍ତେ ପରୀକ୍ଷିତ ଉତ୍ତରା କୁମର
ହେ ମୁନି ଛେଦନକର ସନ୍ଦେହ ମୋହର ।
ହିରଣ୍ୟ କଶିପୁ କଥା ଶୁଣିଲି ସକଳ
ତଦପରେ କାମ କଲେ କେଉଁ ମହାବଳ ।
ସଂସାର ଅକୂପାରକୁ କରିବ ଏ ପାର
କୃଷ୍ଣ ନାମ ନାବ ଦେଇ କର ହେ ଉଦ୍ଧାର ।
ଏମନ୍ତ ବ୍ୟାକୁଳ ଦେଖି ମୁନି ମହାଶୟ
ବୋଇଲେ ଶ୍ରବଣେକର ମନ କରି ଥୟ ।
ହିରଣ୍ୟାକ୍ଷ ନାମରେ ସେ ବୀର ଅସୁର
ସୁଖେ ରାଜତ୍ୱ କରନ୍ତି ହୋଇ ପ୍ରଜାବର ।
ଏହିରୂପେ ଲକ୍ଷବର୍ଷ ହୋଇଲା ଅତୀତ
କାଶ୍ୟପଙ୍କ ମନ୍ଦିରରେ ନାହିଁ ଉତପାତ ।
ହିରଣ୍ୟାକ୍ଷ ଅସୁରର ଦୁଇପୁତ୍ର ଜନ୍ମ
ଦେବଘ୍ନ ପ୍ରଦେବଘ୍ନ ବୋଲିଣ ଏହାଙ୍କର ନାମ ।
ଦିନେ ହିରଣ୍ୟାକ୍ଷ ହୋଲେ ବଡ଼ଭାଇ ପାଶ
ପୃଥିବୀ ବୁଲିବ ଆଜ୍ଞା ଦିଅ ହେ ନରେଶ ।
ଏମନ୍ତ ଶୁଣି ହିରଣ୍ୟ ବୋଲଇ ବଚନ
ପୃଥିବୀ ବୁଲିବ ପାଇଁ ଯେବେ ତୋର ମନ
ତେବେ ସୈନ୍ୟବଳ ନିଅ ବାଛି ବାଛି ଦମ୍ଭ
ଶୀଘ୍ର ଆସିବୁ ଯେପରି ନକର ବିଳମ୍ବ ।
ହିରଣ୍ୟାକ୍ଷ ବୋଇଲା ମୁଁ ସୈନ୍ୟ କି କରିବି
ଏକାକୀ ହୋଇ ଜଗତ ଭ୍ରମଣ କରିବି ।
ଏତେ ବୋଲି ବେଳହେ ଧରି ବେନକରେ
ଏକାକୀ ବାହାର ହେଲା କଟକରୁ ଧୀରେ ।
ଶିରରେ ରତ୍ନ ମୁକୁଟ କର୍ଣ୍ଣରେ କୁଣ୍ଡଳ
ଗଳା ନାନା ଅଳଙ୍କାରେ ହୋଇ ସୁଢ଼ଳ ।
ଏମନ୍ତ ବେଶେ ଭ୍ରମଣ କରେ ରଣ ରଙ୍ଗୀ
ଚରଣ ପଡ଼ନ୍ତେ କ୍ଷିତି କରୁଥାଏ ଶଙ୍କା ।
ବନକରେ ପ୍ରଦକ୍ଷିଣ କଲା ବସୁନ୍ଧରା
ତ୍ରିଗୋଳ ରକ୍ଷିବା ଶକ୍ତି ନୋହିଲା କାହାର ।
ଜନଜନ୍ତୁ ଦେଖିଲେ ସେ ପ୍ରାଣେକରେ ହତ
ଚତୁର୍ଦ୍ଦିଗେ ଦୂର ହୋଇ ପଳାଇଲେ ସମସ୍ତ ।
ଯାଉ ଯାଉ ପଥେ ଦେଖେ ଗୋଟିଏ ବିବର
ତହିଁରେ ପଶିଲା ଯାଇ ନିର୍ଭୟ ଶରୀର ।
ଗଦା କରେ କାହାଣିଲା ଯାଇ ନାଗଲୋକେ
ନଯୁତ ଟେକ ଗୃହିଲ ଚାରି ଚତୁର୍ଦ୍ଦିଗେ ।
ଦେଖଇ ସେ ପୁରୀ ସବୁ ଅତି ଶୋଭାବନ
ନାନା ଚୂଡ଼ା ଲେଖାଅଛି ଯଉଣ ଗଗନ ।

ନାଗମାନେ ସନ୍ଧରନ୍ତି କେଉଁଠୁ ଆଗତ
କେ ତୁମ୍ଭର ମାତାପିତା କେଉଁକୁଳେ ଜାତ ।
ହିରଣ୍ୟାକ୍ଷ ବୋଲେ ମୁହିଁ କଶ୍ୟପ କୁମର
ପୃଥିବୀ ବୁଲିବା ପାଇଁ ହୋଇଛୁ ବାହାର ।
ଏକସ୍ଥାନେ ବିବରେକ ଦେଖିଲଇଁ ମୁହିଁ
ସୁଯୋଗେ ଏଠାରେ ଆସି ପ୍ରବେଶ ହେଲଇଁ ।
ଏମନ୍ତ କହି ଭ୍ରମଣ କରଇ ପାତାଳ
ଦୁଇ ହସ୍ତେ ଦୁଇ ଗଦା ଧରି ମହାବଳ ।
ସପତ ପାତାଳ ତହିଁ କରଇ ଭ୍ରମଣ
ରତ୍ନମୟପୁରମାନ ଦେଖେ ସାବଧାନ ।
କେବଣ ପୁରରେ ଅବା ଜନଙ୍କୁ ଦେଖଇ
କେଉଁ ପୁର ଶୂନ୍ୟ ଦେଖି ତହୁଁ ବାହୁଡ଼ଇ ।
ଆନନ୍ଦରେ ସବୁପୁର କଲେ ଭ୍ରମଣ
ବାସୁକି ରହିବା ସ୍ଥାନେ ପ୍ରବେଶେ ଯାଇଣ ।
ଗଦାବର ଧରି କରେ ଗମଇ ପ୍ରଖରେ
ଯାଇ ମିଳିଲା ବାସୁକି ଅଛନ୍ତି ଯେଠାରେ ।
ତାହାଙ୍କ ସମ୍ମୁଖ ଦେଶେ ଉଭାହେଲା ଯାଇ
ବାସୁକି ପୃଚ୍ଛା କରନ୍ତି ହିରଣ୍ୟାକ୍ଷେ ଚାହିଁ ।
କେବଣ ଦେଶୁ ଆଇଲ କୁହ ମହାବୀର
ଏକା ହୋଇଣ ଆସିଛ କାହାର କୁମର ।
ହିରଣ୍ୟାକ୍ଷ ବୋଇଲା ମୁଁ କାଶ୍ୟପଙ୍କ ସୁତ
ହିରଣ୍ୟ ରାଜା ମୋହର ଅଟେ ଜ୍ୟେଷ୍ଠଭ୍ରାତ ।
ସଂସାର ଭ୍ରମିବା ପାଇଁ ଆଇଲଇଁ ମୁହିଁ
ଦୈବ ଯୋଗେ ତୁମ୍ଭ ସଙ୍ଗେ ଆଜ ଭେଟିଲଇଁ ।
ବାସୁକି ବୋଇଲା ତୁମ୍ଭ ଭାଇ ଆସିଥିଲା
ରତ୍ନ ଅଳଙ୍କାର ଦେଲୁ ସନ୍ତୋଷେ ଘେନିଲା ।
ହିରଣ୍ୟାକ୍ଷ ଦେଖେ ତହିଁ ରତ୍ନମୟ ପୁର
ବାସୁକିର ଆନନକୁ ଦେଖେ ବାର ବାର ।
ଅପୂର୍ବ ପଦାର୍ଥ ସବୁ ଦେଖଇ ନୟନେ
ବାସୁକି ଡାକନ୍ତେ ତାର ନ ଶୁଭଇ କାନେ ।
ନାଗ ଲୋକମାନଙ୍କୁ ସେ ଦେଖିଣ ଆନନ୍ଦ
ସ୍ୱର୍ଗକୁ ଅନାଏ ଦୈତ କୁଳ ଚନ୍ଦ୍ର ।
ହିରଣ୍ୟାକ୍ଷ ବୋଇଲା ହେ ଶୁଣ ଅହିବର
କେତେବେଳେ ମାଏ ପୃଥ୍ୱୀ ଧରିଥିବ ଶିର ।
ଯେତେ ଭାର ହୋଇଅଛୁ ଏ ପୃଥ୍ୱୀ ତୁମ୍ଭକୁ
ଅକାରଣେ ବୋହି ମର କେବଣ କାର୍ଯ୍ୟକୁ ।

ବାସୁକି ବୋଇଲେ ତୁମ୍ଭେ ପଚାରିଲ ଯାହା
ସାବଧାନ ହୋଇ ଶୁଣ ଅସୁରଙ୍କ ନାହା ।
ଯେଉଁକାଳେ ନାରାୟଣ ସୃଷ୍ଟି କଲେ ଜାତ
ଆମ୍ଭଙ୍କୁ ତାଙ୍କର ମୁଖୁଁ କହିଲେ ସମ୍ମତ ।
ଆଜ୍ଞାଦେଲେ ବସୁନ୍ଧରା ଭୂମି ଥିବୁ ବହି
ଯେତେକାଳ ଚନ୍ଦ୍ର ସୂର୍ଯ୍ୟ ଥିବେ ପୁଣି ରହି ।
ସେ ପ୍ରଭୁଙ୍କ ଆଜ୍ଞା ପାଇ ପୃଥ୍ୱୀ ଅଛୁ ଧରି
ମେରୁ ସାଗର ସହିତ ନଗ ବନ ଗିରି ।
ଥୁଡ଼ଦେଲେ ପଡ଼ିଯିବ ଯାଇ ରସାତଳେ
ତେଣୁ ବହି ଅଛୁ ସଦା ମୋ ଶିର କମଳେ ।
ଏହି ସ୍ଥାନେ ସଦା ଥାଇ କେଣିକି ନ ଯାଇ
କେ ଧରିବ ଉଶ୍ୱାସ ମୁଁ ପାଇବି ବା କାହିଁ ।
ବୋଇଲ ଅହମିତ୍ତରେ ଧରିଛ କମ୍ପାଇ
ନ ଥିଲେ ଏ ସଂସାର ଯିବ ଧ୍ୱଂସ ହୋଇ ।
ସଂସାର ପ୍ରାଣିଙ୍କ ହିତେ ଧରିଅଛୁ ମୁହିଁ
ତୁମ୍ଭେ ନ ଜାଣି ବୋଲୁଛ ଧରିଛ କମ୍ପାଇ ।
ହିରଣ୍ୟାକ୍ଷ ବୋଲେ ଗଲେ ତୁମ୍ଭର କି ଗଲା
ଏକଠାବରେ ବସିଲେ କେତେ କଷ୍ଟ ହେଲା ।
ଆହାର ବିହାର ନିଦ୍ରା କିଛି ସୁଖ ନାହିଁ
କି ସୁଖ ପାଇଛ ଏଡ଼େ ଗୋଟାଏ ମୁଣ୍ଡାଇ ।
ନିଜର ସୁଖ ରହିଲେ ବୋଲାଇଛି ଭୋଗୀ
କେତେ କାଳୁଁ ଅଛ ବେକ ଯିବଣି ତ ଲାଗି ।
ସବୁ ଭୋଗାଭୋଗଯାକ ବୃଥା ହୋଇଲା
ପୃଥିବୀ ଗୋଟାକୁ ଧରି ବସିଛ ଯା ଭଲା ।
ତାର ବୋଲ ନଶୁଣିଲେ ତୁମ୍ଭର କି ଯିବ
ପକାଇ ନଦେଇ କମ୍ପା ଧରି ରଖିଥିବ ।
ପିତା ହୋଇକରି ଯେବେ ପୁତ୍ରେ ଦୁଃଖ ଦେଲା
ଧର୍ମରେ ବୁଝିଲେ ସେହୁ ବଇରୀ ବୋଇଲା ।
ବାସୁକି ବୋଇଲେ ଥୁଡ଼ମଣ୍ଡବ ଆବରେ
ତୁମ୍ଭେ ମଧ୍ୟ ଉଭା ହେବ ଆଉ କେଉଁଠାରେ ।
ସ୍ୱର୍ଗ ମର୍ତ୍ତ୍ୟ ରସାତଳ ତିନଲୋକ ଯିବେ
ଏହି ଲୋକ ପ୍ରାଣିମାନେ ତ୍ରାଣ କି ପାଇବେ ।
ତାହାକୁ ଥୁଡ଼ିଲେ ଯେବେ ସର୍ବେ ଯିବେ ନାଶ
ଆମ୍ଭ ଭୋଗ ନ ହେଲେ ବା ଯାଏ ଆସେ କିସ
ସଂସାର ଯାକ ତ ସର୍ବେ ହୋଇଛନ୍ତି ସୁଖୀ
ଏକା ହୋଇ ଆମ୍ଭେ ସିନା ହୋଇଅଛୁ ଦୁଃଖୀ

ଜନକ ହିତରେ ଦୁଃଖୀ ହେଲେ ସୁଖମତେ
ଏହା କହ୍ମାଇ ବସ୍ୱର ନ କରୁଛ ଚିତ୍ତେ ।
ତୁମ୍ଭେ ତ ଯାହା ବୋଇଲ ଭୋଗନାହିଁ ମୋର
ବସିବା ଠାରେ ମିଳଇ ସକଳ ପ୍ରକାର ।
ଆହାର ବିହାର ନିଦ୍ରା ସବୁ ମୁଁ କରଇ
ଭୋଗାଭୋଗରେ କଞ୍ଚନ ଯୁକ୍ତି ମାତ୍ର ନାହିଁ ।
ତୁମ୍ଭ ଦେଖିବାକୁ ସିନା ଲାଗୁଛୁ ଅସୁଖ
ମତେ ତ ହୋଉଛି ବାବୁ ଏହା ବଡ଼ ସୁଖ ।
ବହୁତ ଶାସ୍ତ୍ର ପୁରାଣ କର୍ଣ୍ଣେ ଶୁଣୁଥାଏଁ
ଟଙ୍କେ ପୁଣ୍ୟଫଳର ପ୍ରାପ୍ତେ ମତେ ଜଣାଯାଏ ।
ତୁମ୍ଭର ଶିର ମୁକୁଟ ଗୁରୁ ମଣି ଯେତେ
ବସୁନ୍ଧରା ଗୁଡ଼ିକାକି ମତେ ଲାଗେ ଚୋତେ ।
ସଂସାରରେ ସୁଖଯାକ ଅଛୁ ମୋ ଠାରେ
ଜଗନ୍ନାଥ କୃପାରୁ ମୁଁ ସବୁ କରିପାରେ ।
ସତ୍ୟ କରି କହିଅଛୁ ଧରିବ ପୃଥିବୀ
ଏକ୍ଷଣି କେମନ୍ତ ପୁଣି ତାହା ଛାଡ଼ ଦେବି ।
ସତ୍ୟପଥେ ଥିଲେ ବାବୁ ସବୁକଥା ଭଲ
ଅସତ୍ୟ ଲୋକ ଅଟଇ ସବୁଙ୍କର ଶଲ ।
ହିରଣ୍ୟାକ୍ଷ ବୋଲେ ପୁଣି ଏକା ଥାଅ ବହି
କବା ଆଜ କେହି ଛନ୍ତି ସାହାଯ୍ୟର ପାଇଁ ।
ବାସୁକି ବୋଇଲେ ମୁହିଁ ସର୍ବଦା ବହଇ
କେତେ କେତେବେଳେ ଅବା ପୁତ୍ରଙ୍କୁ ଦିଅଇ
ହିରଣାକ୍ଷ ବୋଲେ ତେବେ ମିଳଇ ସାହାଯ୍ୟ
ମତେ ଦିଅ ଧରିବ ମୁଁ ପୃଥିବୀକି ଆଜ ।
ତୁମ୍ଭେ ତ ଅନେକ କାଳୁ ଏହା ଅଛ ଧରି
ମତେ ଦିଅ ମୁଁ ଧରିବ ଦେଖେ କେତେ ଭାର ।
ବାସୁକି ବୋଇଲେ ତହୁଁ ଅସୁର ବଚନେ
ଏହାକୁ ଧରି ପାରିବ ଜାଣିବ କେସନେ ।
ତୁମ୍ଭେ ଜଗତ ଧରିଲେ ନିଶ୍ଚେ ନାଶଯିବ
ତିନ ଭୁବନରେ ଆଜ କିଛୁ ନ ରହିବ ।
ବହି ନ ପାରି ପଡ଼ିବ ନିଶ୍ଚେ ଅସମ୍ଭାଳେ
ତ୍ରିଭୁବନର ସମ୍ପଦ ଯିବ ଏକାବେଳେ ।
ତୁମ୍ଭେ ନାଶଯିବ ପୁଣି ଆମ୍ଭେହିଁ ମରିବୁ
ତ୍ରିଭୁବନଯାକ ସବୁ ବୁଡ଼ାଇବ ବାବୁ ।
ଏ ପୃଥିବୀ ଧରିବାକୁ ନ ପାରିବ ବଳେ
ମୁହିଁ ଏହାକୁ ଧରିଛୁ ହରି କୃପା ଫଳେ

ଏ କଥାକୁ ବାବୁ କିଛୁ ପ୍ରୟୋଜନ ନାହିଁ
ନିଜ ଭୁବନକୁ ଏବେ ଚଳ ପଥ ବାହି ।
ତୁମ୍ଭେ ତ କାଶ୍ୟପକୁଳେ ଅଛ ଅବତରି
ଅକାରଣରେ କରିବ କର୍ମ ଏତେ ଭାରି ।
ହିରଣ୍ୟ ବୋଇଲା ମୁହିଁ ପଚାରିବ ନାହିଁ
ଦନ୍ତେ ଧରି ତୁମ୍ଭ ହାତେ ଦେବଇଁ ବଢ଼ାଇ ।
ତୁମ୍ଭେମାନେ ମୋହର ଠାରୁ ଏତେ ବଳୀୟାର
ତୁମ୍ଭେ ଧରିବାରୁ ଟଳି ନ ପଡ଼ଇ ଭାର
ମୁହିଁ ଧରିଲେ ପୃଥିବୀ ପଡ଼ିବ କପାଇଁ
ଛାଡ଼ ଛାଡ଼ ପୃଥିବୀକୁ ଏବେ ମୁଁ ଧରଇ ।
ମୋର ବଚନରେ ଦେଲେ ପୁଣି ଦେଇଯିବ
ନ ଦେଲେ ତୁମ୍ଭଙ୍କୁ ମାରି ପୃଥ୍ୱୀ ବଳେ ନେବ ।
ଅସୁରି ବଚନେ ଭୟ କଲେ ନାଗେଶ୍ୱର
ଧାଡ଼କାରେ ବସୁନ୍ଧରା ଧଇଲା ଅସୁର ।
ବାସୁକି ମସ୍ତକରୁ ସେ ଟେକି ଘେନିଗଲା
ଆପଣା ମସ୍ତକେ ନେଇ ତାହା ବସାଇଲା ।
ଦେଖି ନାଗଲୋକମାନେ କଲେ ହାହାକାର
ବୋଇଲେ ରହ ପୃଥିବୀ ନାଶ ତୁ ନକର
ସେମନ୍ତ କହି ଆଗରେ ଓଗାଳିଲେ ଯାଇ
ତାଙ୍କ ମନ ପୃଥିବୀକୁ ଧରିବେ ଛଡ଼ାଇ ।
ନାନାବିଧ ଅସ୍ତ୍ରମାନଙ୍କୁ ଧରିଛନ୍ତି କରେ
ହିରଣ୍ୟାକ୍ଷଠାରୁ ପୃଥ୍ୱୀ ଧରିଲେ ସେ ଆରେ
ଓଟାରନ୍ତି ନ ପାରନ୍ତି ତାଠାରୁ ଛଡ଼ାଇ
ଆଣ୍ଡେ ହିରଣ୍ୟାକ୍ଷ ତାକୁ ଧରିଛି ନଠାଇ ।
ଶତେଯୁର କରି ସର୍ପେ ବେଢ଼ିଲେ ସକଳ
ତାହା ଦେଖି କୋପ କଲା କାଶ୍ୟପର ବାଳ
ପର୍ବତ ସମାନ ଗଦା ବୁଲାଇଲା ତୋଳି
ଗର୍ଜି ବାଘୁ ଜାତ ହେଲା ପାତାଳର ସ୍ଥଳୀ ।
ନିର୍ଘାତପ୍ରାୟେ ଶବଦ ହେଲା ମହାଘୋର
ତାହା ଦେଖି ନାଗଲୋକ ହେଲେ ଚମତ୍କାର ।
ଏକ ହସ୍ତରେ ଟେକିଣ ଧରି ବସୁନ୍ଧରା
ଅନ୍ୟ ହସ୍ତରେ ମାରଇ ହୁହୁଙ୍କାର କରି
ଦେଖି ନାଗବଳ ତହୁଁ କୋପେ ଗୁଡ଼ିତ ରେ
ନାନା ଅସ୍ତ୍ର ପ୍ରହାରନ୍ତି ତାହାର ଉପର ।
ତଡ଼ିବେଗେ ପଡ଼ିଗଲା ଯୁଦ୍ଧ ହାଲହୁଳ
ଦଉଡ଼ନ୍ତି ନାଗମାନେ ଘୋର ନାଦକରି ।

ମାର ମାର ହାଣ ହାଣ ଶୁଭେ ଏହି ଧ୍ୱନି
ଗର୍ଜନ କରନ୍ତି ନାଗେ କାଳବଧି ଘେନି ।
କର୍କୋଟକ ତକ୍ଷକଙ୍କୁ ପୁଣିହିଁ କୁମ୍ଭକ
ଶଙ୍ଖଚୂଡ଼ ମହାପଦ୍ମ ଆବର ସେତେକ ।
ବେଢ଼ିଲେ ସେ ନାଗବଳ ହୋଇଣ ପ୍ରବଳ
ଅସ୍ତ୍ରମାନ ପ୍ରହାରନ୍ତି ତାଙ୍କୁ ଅନର୍ଗଳ ।
ମହୀଧର ନାଗରାଜା ଶିବିକରେ ଥିଲେ
ନାଗବଳ ନବେଷ୍ଟନେ ସେ ଧାଇଁପଡ଼ିଲେ ।
ମାରୁଛନ୍ତି ନାଗସୈନ୍ୟ ନାନା ଅସ୍ତ୍ର ଧରି
ଗଦା ଭୁଷୁଣ୍ଡି ମୁଦ୍ଗର କୁନ୍ତ ଆଦି କରି
କେହି ଶକ୍ତି ପ୍ରହାରନ୍ତି ମହାବଳେ ଆଣି
କେହି ନାରାଚ ପେଷନ୍ତି ବର୍ଷାପାଣି ଜାଣି ।
ହସ୍ତୀକୁ କୁସୁମମାନ ଫିଙ୍ଗିଲାର ପରି
ଦୈତ୍ୟଙ୍କୁ ମାରନ୍ତେ ଅସ୍ତ୍ର ବାଜେ ସେହି ପରି ।
କାଶ୍ୟପ ମୁନିଙ୍କ ବରେ ବଜ୍ର ତାର କାୟ
ରହିଛି ସେ ନାଗମଧ୍ୟେ ମନ୍ଦର ପର୍ବତ ।
କୋପେ ବୀର ଗଦା ଧରି ପ୍ରହାରଇ ତୋଳି
ଶତ ଶତ ନାଗବୀର ପଡ଼ୁଛନ୍ତି ଢଳି ।
ପୁନଃପୁନଃ ଗଦା ଧରି ମାରେ ଅନର୍ଗଳ
ଛିନ୍ନଭିନ୍ନ ହୋଇଗଲେ ସର୍ବ ନାଗବଳ ।
ବିଷମ ପ୍ରହାରେ ନାଗେ ଲୋଟିଲେ ଧରଣୀ
ମୁଖ ବାଟରେ ଶୋଣିତ ପଡ଼େ ସ୍ରୋତ ଜାଣି ।
ଗର୍ଜନ ସାଥେ ପ୍ରହାର କରନ୍ତେ ସେ ବେଗ
ବିଷମ ଆଘାତେ ପଡ଼େ ଅଷ୍ଟକୁଳ ନାଗ ।
ବାସୁକି ସଙ୍ଗତେ ହେଲେ ତହିଁ ମୋହଗତ
ଛିନ୍ନଭିନ୍ନେ ପଳାଇଲେ ଧାଇଁଣ ଭୀତ ।
ଗର୍ଜଇ ସେ ମହାବଳ ନର୍ଘାତକୁ ଜିଣି
ଚଞ୍ଚଳେ ଗମଇଁ ଦେ ତୟ ଧରିଣ ଧରଣୀ ।
ଚେତ ଉଠିଣ ସ୍ୱଧାମ ନାଗେ ଜଳଜଳ
ବିଚାରନ୍ତି ନଷ୍ଟେ ଆଜ ନାଗିଲ ସକଳ ।
ଅନ୍ତ ଆରତେ ରୋଦନ କରନ୍ତି ସକଳେ
ଆଉ କି ଉପାୟ ଅଛି ନ ପାରିଲେ ବଳେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ନୃପବର
ପୃଥିବୀକୁ ଘେନିଗଲା ହିରଣ୍ୟାକ୍ଷ ବୀର ।
ବାସୁକି ରାଜା ଜଣେକ ଦେଲେ ସେ ପଠାଇ
କୋଇଲେ ଦେବଙ୍କୁ ଜାଇ ବେଗହୋଇ ଯାଇ
ରାଜାଙ୍କର ଆଜ୍ଞା ପାଇ ବେଗେ ଯାଇ ଚର
ପ୍ରବେଶ ହୋଇଲା ଯାଇ ସନ୍ଧି ସ୍ୱର୍ଗପୁର ।
ସୁଧର୍ମା ସଭା ନିକଟେ ମିଳିଲା ସେ ଯାଇ
ଭୟେ ଥରହର ହୋଇ ଶରୀର କମ୍ପଇ ।
ଦେବତାଏ ପଚାରନ୍ତି ବ୍ୟସ୍ତ କମ୍ପ ନାଗ
ଧୈର୍ଯ୍ୟଧରି କୁହ କିସ ହୋଇଛି ଦୁର୍ଯୋଗ ।
ମସ୍ତକରେ କରଯୋଡ଼ି କହେ ନାଗବୀର
ପୃଥିବୀ ଘେନି ଯାଉଛି କାଶ୍ୟପ କୁମର ।
ନାଗବଳ ଯାକ ସେହୁ ପକାଇଲା ମାରି
ବଳେ ହିରଣ୍ୟାକ୍ଷ ବୀର ନିଏ ବସୁନ୍ଧରୀ ।
ବାସୁକି ନାଗର ରାଜା ଦେବାରୁ ପଠାଇ
ଏଥିପାଇଁ କି ଅଇଲି ଏଠାବକୁ ଜାଣ ।
ପାରିଲେ କାରଣ କହ ଆହେ ଦେବବର
ନ କଲେ ସରିଲା ଏବେ ବୁଡ଼ିଲା ସଂସାର ।
ନାଗଲୋକ ମୁଖରୁଁ ଶୁଣି ଏମନ୍ତ ବଚନ
ଚମକି ଉଠିଲେ ପୁଣି ସର୍ବ ଦେବଗଣ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଶଶୀ ପୁଣି ଦିବାକର
ଆବର ଦେବ ସଭାରେ ଛନ୍ତି ଚକ୍ରଧର ।
ତେତିଶକୋଟି ଦେବତା ସକଳେ ଅଛନ୍ତି
କାଶ୍ୟପଙ୍କୁ ଚାହିଁ ବ୍ରହ୍ମା ବିଷ୍ଣୁ ପଚାରନ୍ତି ।
ତୋହର କୁମର ଏବେ ନାଶିଲା ସଂସାର ।
କି ବୁଦ୍ଧି କରିବା ତାହା କହ ମୁନିବର
କାଶ୍ୟପ ବୋଇଲେ ଦେବ ମୋର ଦୋଷ ନାହିଁ
ଯାହା କରିବାର କର କି କହିବ ମୁହିଁ ।
ତନୟପୁର ଯାକ ଯେବେ କରୁଛନ୍ତି ନାଶ
ଖାଇଥିଲେ ସେ ପାମର ନାହିଁ ମୋ ପୌରୁଷ
ତାହାଙ୍କର ବୋଲଣା ମୁଁ ନ ପାରିବି ସହି
ଶୁଣି ଖୁଣଂସା କରିଲେ ଦେବତାଏ ଚାହିଁ ।
ବିଶ୍ୱପ୍ରସୂ ବ୍ରହ୍ମା ଯେଣୁ ହେ ଅଟ ପ୍ରଜାପତି
ତୋରଠାରୁ ଏ ସଂସାର ହୋଇଛି ଉତ୍ପତ୍ତି ।
ଏମନ୍ତ ସମୟେ ସ୍ୱର୍ଗ କମ୍ପେ ଟଳମଳ
ତାହା ଦେଖି ଭୟଭଳେ ଦଶଦିଗପାଳ ।
ରଖ ରଖ ନାରାୟଣ ବୁଡ଼ିଲାଟି ସବୁ
କାଶ୍ୟପ ପୁତ୍ର ଅକର୍ମେ ସବୁ ନାଶ ଯିବୁ ।
ଆର୍ତ୍ତନାଦେ ତ୍ରିଭୁବନ ପଡ଼ିଗଲା ଫାଟି
ହୃଦୟେ ଚିନ୍ତା କଲେ ଦେଖି ଚକ୍ରପାଣି

ଦେବଙ୍କ ସଭା ମଧ୍ୟରେ ଛନ୍ତି ଉଭା ହୋଇ
ହରିବନ୍ତ ତାଙ୍କୁ ଏବେ କ କରିବ ମୁକ୍ତି ।
ନିଷ୍ଟୟ ପାମର ନାଶ କଲା ମୋ ସଂସାର
ଏବେ ମୃତ୍ୟୁ ନାହିଁ ଯେଣୁ ନୋହିବ ସଂହାର ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ନରନାଥ
ପୃଥିବୀ ମୁଣ୍ଡାଇ ଚଳେ କାଶ୍ୟପର ସୁତ ।
ଏଣେତେଣେ ବୁଲଇ ସେ ବାଇପ୍ରାପ୍ତ ହୋଇ
କୌଣସି ଆଡ଼େ ଯିବାକୁ ନିର୍ଦ୍ଦିଷ୍ଟ ନଥାଇ ।
ପାଦ ଘାତରେ ପାତାଳ ହୁଏ କମ୍ପମାନ
ପୁଣି ଦୈତ୍ୟ ଘନ ଘନ କରଇ ଗର୍ଜନ ।
ବେନି ଗଦା ଏକ ହସ୍ତେ ସେହୁ ଅଛି ଧରି
ଛନ୍ଦ ପ୍ରାପ୍ତ ମୁଣ୍ଡାଇଛି ମୁଣ୍ଡେ ବସୁନ୍ଧରୀ ।
ମର୍ତ୍ତ୍ୟପୁର ଲୋକମାନେ ହେଲେ ଟଳମଳ
ହାଣ୍ଡେ ଘାଟେ ବାଟେ ଗୃହେ ପଡ଼ିଲେ ସକଳ
କେତେ ଠିଆ ହେଲେ ମଧ୍ୟ ନ ପାରନ୍ତି ରହି
କେ ବୋଲଇ କମ୍ପମାନ କମ୍ପା ହେଲା ମହୀ ।
କେ-ବୋଲେ ବାସୁକି ଅବା ମୋଡ଼ିଲା ତା ଶିର
ତେଣୁକରି କମ୍ପମାନ ହେଉଛି ସଂସାର ।
କେ ବୋଲଇ ତାହା ହେଲେ ଅଳପ ହୁଅନ୍ତା
ଏତେବେଳଯାଏ କମ୍ପା ଉଛୁର ରହନ୍ତା ।
ନଷ୍ଟେ ଏବେ ବସୁନ୍ଧରା ଯିବ ଦେବ ସେହି
କେବଣ ବୁଦ୍ଧି କରିବା ରଖ ମହାବାହୁ ।
ବସି ନ ପାରନ୍ତି ଉଭା ହୋଇ ନ ପାରନ୍ତି
ଲୋଟି ପଡ଼ି ଯେ ଯାହାର ସ୍ଥାନେ ଗଡ଼ୁଥାନ୍ତି
ଗୃହ ସ୍ତମ୍ଭ କାନ୍ଥ ବାଡ଼ ପଡ଼ିଲା ଲୋଟି
ବୃକ୍ଷ ହୋହଲି ହୋହଲି ପଡ଼ଯାନ୍ତି ଭୂମି ।
ସମୁଦ୍ରେ ଲହଡ଼ି ଉଠେ ପର୍ବତ ଆକାର
କେତେ ଗ୍ରାମ ଭାସିଯାଏ ସଂଖ୍ୟା ନାହିଁ ତାର
କେ କେ ଡାକୁଥାନ୍ତି ରଖ ରଖ ଭଗବାନ —
ହେ ଧର୍ମଦେବତା କମ୍ପା ହେଲା ଏ କପଣ ।
ବ୍ରହ୍ମାଣ୍ଡ ଭିତରେ ଯେତେ ଜୀବଜନ୍ତୁ ଥିଲେ
ପୃଥିବୀ ଚଳନ୍ତେ ସର୍ବେ ଲୋଟିଣ ପଡ଼ିଲେ ।
ଅଟ୍ଟାଳି ଦେଉଳମାନ ପଡ଼ଇ ଭାଙ୍ଗି
ତା ଆଘାତେ ପ୍ରାଣୀ ପ୍ରାଣ କେତେ ଗଲା ତେଜି
କେହୁ ଆଉତେ ପଡ଼ିଛି ବୁଜ ଆଖି ପାଟି
କେହୁ ପାଟି ପାକୁ ପାକୁ କେ ଦାନ୍ତ ନକଟି

କାହା ଅଣ୍ଟା ପିଠି ମୁଣ୍ଡ ଆହ ଭାଜିଗଲା
ଗୃହ ବାଟ ଅବାଟରେ କେହୁ ପଡ଼ି ମଲା ।
ସଂସାରରେ ବହୁ ଜୀବ ହୋଇଲେ ନିଧନ
କେତେଗୋରୁ ହାତୀଘୋଡ଼ା କେ କରେ ଲିଖନ,
କେହୁ କେଉଁଆଡ଼େ ଆଉ ନ ପାଇଲେ ଯାଇ
ମୁଣ୍ଡ ବୁଲନ୍ତେ ପଡ଼ିଲେ ସର୍ବେ ସେହୁଠାଇଁ ।
ଭୟେ ପକ୍ଷୀମାନେ ଯାଇଁ ଆକାଶେ ଉଡ଼ିଲେ
କିନ୍ତୁ ତଳେ ପଡ଼ି ସର୍ବେ ପ୍ରାଣ ବିସର୍ଜିଲେ ।
ସୂର୍ଯ୍ୟଙ୍କ କିରଣ ଆଉ ନ ପଡ଼ିଲା କାହିଁ
ଅନ୍ଧକାର ଘୋଟିଗଲା ସର୍ବସ୍ଥରେ ଯାଇଁ ।
କେହୁ କେହୁ ପର୍ବତରେ ଯାଇଣ ରହନ୍ତି
କମ୍ପି ଭୂଧର ପଡ଼ିଲେ ସେମାନେ ମରନ୍ତି ।
ସକଳ ସ୍ଥାନେ ଘଟିଛି ଏହି ପରକାରେ
ପ୍ରାଣିଙ୍କର କଷ୍ଟ ସୀମା କହିଲେ ନ ସରେ ।
ହାହି ହାହି ବୋଲି ଡାକ ପକାଇ ନିରତ
ଏ ଦୁସ୍ତର ସଙ୍କଟରୁ ରଖ ଜଗନ୍ନାଥ ।
ଆହେ ଚକ୍ରପାଣି ଟିକେ କର ହୁଣ୍ଡକାର
ହେ ଜଗନ୍ନାଥ ସଂସାର ଆସିଣ ଉଦ୍ଧାର ।
ହେ ଜଗନ୍ନାଥ କପାଇଁ କଲୁ ଏତେ ଘଣ
ଏକାକିଣେ ନାଶଯାଏ ତୋର ବସୁନ୍ଧରୀ ।
ଏମନ୍ତ ଡାକିଣ ଲୋକେ ଆରତ ହୁଅନ୍ତି
ଉଠି ନ ପାରି ଭୂମିରେ ଗଡ଼ି ଗଡ଼ି ଯାନ୍ତି ।
ନୂଆ ପୃଥିବୀ ପ୍ରଳୟ କାଳ ହୋଇନାହିଁ
ହାହି ହାହି ରକ୍ଷା କର ଆହେ ସର୍ବତ୍ରାହି ।
ଅକାଳେ ପ୍ରଳୟ ଆସି ହେଉଅଛି ଏବେ
ନାହିଁ ଜଗନ୍ନାଥ ଆଉ ରକ୍ଷିବୁ ତୁ କେବେ ।
ପୂର୍ବଦିଗ ସ୍ଥାନ ସବୁ ପଶ୍ଚିମକୁ ଗଲା
ପଶ୍ଚିମ ପାଖ ପୃଥିବୀ ପୂର୍ବରେ ରହିଲା ।
ଦକ୍ଷିଣ ଉତ୍ତର ହେଲା ଉତ୍ତରେ ଦକ୍ଷିଣେ
ତେତେବେଳେ ଦିଗମାନେ ହେଲେ ଏଣେତେଣେ
ଆଘାତ ହୋଇ ଭୂମିରେ ଲୋକେ ପଡ଼ିଛନ୍ତି
କେଉଁଆଡ଼େ କେଉଁ ଦିଗ ବାରି ନ ପାରନ୍ତି ।
ମୁଖ ଗୋଳେ କାର କଥା କେହି ନ ଶୁଣନ୍ତି
ପାତାଳର ଲୋକେ ମର୍ତ୍ତ୍ୟ ଗମନ ଦେଖନ୍ତି ।
ପୂର୍ବର ବାହିନୀ ନଦୀ ପଶ୍ଚିମକୁ ବହେ
ପଶ୍ଚିମ ପ୍ରବାହମାନ ଉତ୍ତରକୁ ହୁଏ ।

କେତେବେଳେ ନଦୀମାନେ ଦୁର୍ଗନ୍ଧ ପ୍ଲୁତ
ଯେତେବେଳେ ଯେଉଁ ଭଙ୍ଗି କରଇ ଦଇତ ।
ଏକ ମୁଠା ହୋଇଣ ସେ ପୃଥିବୀକି ନେଲା
ମହାଘୋର ଶୂନ୍ୟପଥେ ଯାଇଣ ଉଠିଲା ।
ପାତାଳ ମେଦିନୀ ଦୁହେଁ ଯେତେକ ଅନ୍ତର
ତହିଁରୁ ଅଧିକ ଶୂନ୍ୟ ଉଠିଲା ଅସୁର ।
ତଳକୁ ଚାହିଁଲେ ଦିଶେ ମହାଶୂନ୍ୟମୟ
ଘୋର ଶୂନ୍ୟ ଦେଖି ଦୈତ୍ୟ ମନେକଲା ଭୟ
ମେଦିନୀକୁ ଘେନକରି ଶୂନ୍ୟେ ଉଡ଼ୁଥିଲା
ଅନ୍ଧାରକୁ ଡରି ପୁଣି ପାତାଳେ ମିଳିଲା ।
ସ୍ୱଭାବତଃ ଆଜ ତେଣେ ପୃଥିବୀ ତ ନାହିଁ
ସୂର୍ଯ୍ୟଙ୍କ ଉଦୟ ଆଜ ହେବ ଅବା କାହିଁ ।
ତେଣୁକରି ତାର ମନେ ଭୟ ହେଲା ଜାଣ
ସେଥିନିମନ୍ତେ ପାତାଳେ ହେଲା ଉପସ୍ଥିତ ।
ଜୟ ହେ ଜଗତ୍ତାରଣ ଜୟ ରମାପତି
ଚଉଦ ଭୁବନ ନାଥ ଅଗତିର ଗତି ।
ସଙ୍କଟ ଭଞ୍ଜନ ନାଥ ସର୍ବଭୂତେ ବାସ
ଭକ୍ତମାନେ କରୁଥାନ୍ତି ତୋ ନାମ ଅଭ୍ୟାସ ।
ତୁମ୍ଭ ମାତୁ ତୁମ୍ଭ ତାତୁ ତୁମ୍ଭ ବନ୍ଧୁ ମିତ୍ର
ତୁମ୍ଭ ଦୟାମୟ ହରି ତୁହି କଳ୍ପତରୁ ।
ତୁହି ସୂର୍ଯ୍ୟ ତୁହି ଚନ୍ଦ୍ର ତୁହି ଦିବାକର
ତୁହି ଅନ୍ତର୍ଯ୍ୟାମୀ ନାଥ ବାହାରେ ଘେନାଇର
ସର୍ବଦା ପରୀକ୍ଷା ଆଉ ନ କର ତୁ ମୋତେ
ତୋ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବ କେ ଜଗତେ ।
କେମନ୍ତ ତରିବ ପ୍ରଭୁ ଏ ଭବସାଗର
ତୁହି ଦୟାକର ମୋତେ ହୋଇ କର୍ଣ୍ଣଧାର ।
ତୋ ନାମ ଅଭ୍ୟାସ କରି କାଟିବ ଯାତନା
କନ୍ଥିରେ ବସିବ ବାନର ନ କରିଣ ଦକା ।
ଏତିକ ମାତ୍ର କଥାରେ ନ ହେବୁ କୃପଣ
କାମପାଳ ଦ୍ୱିଜ ଆଉ କହେ ନାରାୟଣ ।

— * —

## ହିରଣ୍ୟାକ୍ଷ ସହିତ ଶ୍ରୀମନ୍ ନାରାୟଣଙ୍କ ଯୁଦ୍ଧ ଓ ପରାଜୟ

ଅଭିମନ୍ୟୁଙ୍କ ନନ୍ଦନ ପରୀକ୍ଷିତ ରାଜନ
ପୁଣି ମୁନିଙ୍କ ଚରଣେ କଲେ ନିବେଦନ ।
ହେ ମୁନି ଛେଦନକର ସନ୍ଦେହ ମୋହର
ପାତାଳେ ପ୍ରବେଶ ହେଲା ହିରଣ୍ୟାକ୍ଷ ବୀର ।
ମସ୍ତକରେ ଧରି ବୁଲେ ଅବନୀକୁ ନେଇ
କାହିଁ ନ ରହିଲା ଦୁଷ୍ଟ ସ୍ଥିର ଭାବ ହୋଇ ।
ଏଥି ଉତ୍ତାରୁ ଦଇତ କେଉଁ କଥା କଲା
ବାସୁକୀ ମସ୍ତକେ ପୁଣି ଦେଲା କି ନ ଦେଲା ।
କିବା ନ ଛାଡ଼ିଲା ସେହୁ ମସ୍ତକରୁ ଧରା
ପୁଣି କି ଉପାୟ କଲେ ମୁକୁନ୍ଦ ପସରା ।
କୃପା ସେହି କଥା ମୋତେ କରିବ ଶ୍ରବଣ
ପିତ୍ରକୁ କୃତାର୍ଥ କରି ହୋଇବ କାରଣ ।
ରାଜାଙ୍କ ବିକଳ ଦେଖି ଶୁକ ମୁନିବର
ବୋଲଇଲେ ଯାହା ହୋଇଲା ତା ଶ୍ରବଣ କର
ଯେଉଁ ରୂପେ ନାରଖାର କରିଲା ସେ ମହୀ
ଭୟେ ଦେବତା ସକଳ ନ ପାରନ୍ତି କହି ।
ସେମନ୍ତ ନମ୍ରେ ନମଇ ପୁଣି ତାଙ୍କ କାୟେ
ଶ୍ରୀ ନାରାୟଣଙ୍କୁ ସ୍ତୁତି ସବୁ ଦେବତାଏ ।
ବୋଲିଲେ ହେ ଦେବ ପ୍ରଭୁ ରାଜୀବଲୋଚନ
ସୃଷ୍ଟିରକ୍ଷାକର ନାଶ କରେ ଯାତୁଧାନ ।
ତୁମ୍ଭେ ନ ରଖିଲେ ନଷ୍ଟ ଗଲା ବସୁନ୍ଧରା
ରକ୍ଷାକର ରକ୍ଷାକର ଜଗତନିବାସୀ ।
ଶ୍ରୀହରି ବୋଲନ୍ତି ତାଙ୍କୁ କରିବ ମୁଁ ବଧ
ତୁମ୍ଭେ ଦେବତାଏ କିମ୍ପା ହେଉଛ ଆରତ ।
ଧରିବ ଶୀଘ୍ର ବୋଲନ୍ତି ଯାଅ ବେଗ ହୋଇ
ହେବ ମାତ୍ର ଦଇତକୁ ରକ୍ଷାକର ମହୀ ।
ଚଳନ୍ତି ଶ୍ରୀନାରାୟଣ ଦେବଙ୍କ ବଚନେ
ପାଦ ଘାତରେ ଯାଆନ୍ତି ପାତାଳ ଭୁବନେ ।
ଦେଖନ୍ତି ଦୈତ୍ୟ କୁଳର ନଗର ଆକାର
ଶିରେ ମହୀ ଧରିଅଛି ହସଇ ଘୋରକାର ।
ରହ ରହ ବୋଲି ତାକୁ ଡାକିଲେ ଯାଇଁ
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ ବହି ।
ମୁକୁଟ କୁଣ୍ଡଳଙ୍କାର ପଞ୍ଚ ଅଗ୍ନି ତେଜ
ସୁଦର୍ଶନ ଚକ୍ର କରେ ଜ୍ୟୋତି କୋଟି ସୂର୍ଯ୍ୟ
ମାଳାଭୂଷିତ କଳେବର ରାଜୀବ ଲୋଚନ
ଚତୁର୍ବର୍ଗ ଦାତା ପ୍ରଭୁ ପ୍ରସନ୍ନ ବଦନ ।
ଯଜ୍ଞୋପବୀତ କଣ୍ଠରେ ଗଳେ ରତ୍ନମାଳ
ନୀଳ ମେଘ ଶୋଭାକରେ ଯେପରି ସଜଳ ।

ପୀତବସ୍ତ୍ର ପରିଧାନ ସୁବାସ ଶରୀର
ଆହା କି ମାଧୁରୀ ଶୋଭା ସୁରଙ୍ଗ ଅଧର ।
ଏହିରୂପେ ଦିବ୍ୟବେଶ ପ୍ରଭୁ ନାରାୟଣ
ଯୋଗୀଜନ ଯେଉଁ ବେଶ ଚିନ୍ତେ ଅନୁକ୍ଷଣ ।
ତାହାଙ୍କୁ ଦେଖି ଦନୁଜ ମନେ ବିସ୍ମରିଲା
ଏ କାହୁଁ ଆଇଲା ବୋଲି ତାହାଙ୍କୁ ପୁଛିଲା ।
ସେ ପ୍ରଭୁଙ୍କୁ ଦେଖି ଦୈତ୍ୟ ବୋଇଲେ ବଚନ
କାହିଁ ଘର କିସ ନାମ କହ ତୁ ବଦନ ।
ଶ୍ରୀହରି ବୋଇଲେ ମୁହିଁ ଜଗତାଧିକାରୀ
ତୋତେ ମାରି ଉଦ୍ଧରିବି ଆଜି ବସୁନ୍ଧରୀ ।
କମାଇ ସଂସାର ମୋର ନାଶିଲୁ ପାମର
ତା ପ୍ରତ୍ୟୁପକାରେ ତୋତେ ଦେବି ଯମପୁର ।
ନାରାୟଣଙ୍କ ବଚନେ ବୋଲେ ସେ କୌଣପ
ତୁ ମୋ ଶତ୍ରୁ ଖୋଜୁଥିଲି ମିଳିଲୁ ସମୀପ ।
ମୁହିଁ ଏବେ ହୋଇଲିଣି ଜଗତାଧିକାରୀ
ଦେଖୁନାହୁଁ ବଳି ନାଏ ମୋର ବସୁନ୍ଧରୀ ।
ଆଉ ହୋଇ ଯାଅ ତୁରେ ଯିବ ମୁହିଁ ଚଳି
ପ୍ରଭୁ ବୋଇଲେ ଯିବୁ ତୁ ମୋତେ କାହୁଁ ବଳି
ପ୍ରାଣ ଘେନି ଯିବୁ ମନେ ବିଚାରୁ ପାମର
ଆଜି ନିଶ୍ଚୟ ମୋ ହସ୍ତେ ଯିବୁ ଯମପୁର ।
ତାହା ଶୁଣି କୋପକଲା କଶ୍ୟପ ନନ୍ଦନ
ଗଦା ବୁଲାଇ ପିଟିବା କରନ୍ତେ ସେ ମନ ।
ପ୍ରଭୁ ହୃଦେ ବାଜିଥାନ୍ତା ସେହି ଗଦାବର
ଆଉ ହୋଇ ଗଲେ ସ୍ୱାମୀ ବିଜୁଳି ପ୍ରକାର ।
ପୁଣି ସେ ଦୈତ୍ୟର ଆଗେ ଉଭା ହେଲେ ଯାଇଁ
କୋପେ ସୁଦର୍ଶନ ଚକ୍ର ଶ୍ରୀକରରେ ନେଇ ।
ଅଙ୍ଗୁଳିରେ ବୁଲାଇଲେ ତାକୁ ମହାବାହୁ
କୋଟି ୨ ସୂର୍ଯ୍ୟ ଜିଣି ଦିଶେ ଦାଉଦାଉ ।
ହୁଁକାର ଶବଦ କରି ପେଷିଲେ ସେ ଖରେ
ଦଇତକୁ ମାର ବୋଲି ଆଜ୍ଞା ଦେଇ ତାରେ ।
ଚଳିଗଲେ ଚକ୍ରବର କରି ଘୋର ସ୍ୱନ
କୋଟି ସୂର୍ଯ୍ୟ ଜିଣି ତାଙ୍କ ବିରାଜେ କିରଣ ।
ହିରଣାକ୍ଷ କଣ୍ଠେ ଯାଇ ପଡ଼େ ବଜ୍ର ପ୍ରାୟେ
ନ ଭେଦିଣ ଅସ୍ତ୍ରବର ବାହୁଡ଼ିଣ ଯାଏ ।
ଶ୍ରୀହରି ହସ୍ତରେ ପୁଣି ଲାଗିଲାକ ଯାଇଁ
ତା ଦେଖି ଚକିତ ହେଲେ କମଳାର ସାଇଁ ।

ପରୀକ୍ଷିତ ପଚାରିଲେ ଏ କଥା କେମନ୍ତ
ଚକ୍ର ଆଘାତେ କପାଇଁ ନ ମଲା ଦଇତ ।
ଯେ ଚକ୍ର ଛେଦନ ଶକ୍ତି ଅଟେ ତ୍ରିଭୁବନ
ସେହି ଅସ୍ତ୍ର ଆନ ସଙ୍ଗେ ହେଲାକ ସମାନ ।
ଆଜ ପୁଣି କ୍ଷୀରପାନ କରିନାହିଁ ଦୈତ୍ୟ
ଶୁକ ମୁନି ଏହି କଥା କହଇ ବିଶେଷ ।
ମୁନି କହନ୍ତି ସେ ଚକ୍ରେ ନୋହିବ ସଂହାର
କାଶ୍ୟପ ଦେଇଅଛନ୍ତି ତାକୁ ଏହି ବର ।
ବଜ୍ର କରି ଦେଇଛନ୍ତି ତା ଶରୀରମାନ
ତେଣୁକରି ସୁଦର୍ଶନେ ନୋହିଲେ ଛେଦନ ।
ଅସମ୍ଭବ ବଳ ତାର କହିଲେ ନ ସରେ
ତେଣୁ ପୃଥିବୀ ବହଇ ନଷ୍ଟ ପରକାରେ ।
ଅଙ୍ଗେ ପରଶ ତାହାର ହେବ ଅବା କାହିଁ
ଦୁଇଦିନ ହେଲା ପୃଥ୍ୱୀ ଧରି ସେ ବୁଲଇ ।
ପ୍ରଥମ ଦିନ ପୃଥିବୀ ସମସ୍ତ ବୁଲିଲା
ସୂର୍ଯ୍ୟ ଅସ୍ତକାଳେ ଯାଇଁ ପାତାଳେ ପଶିଲା
ମର୍ତ୍ତ୍ୟପୁରରେ ଯେ କାଳେ ହେଲା ଅନ୍ଧକାର
ପାତାଳରେ ଉଦୟ ପୁଣି ହୋଇଲେ ମିହିର ।
ବାସୁକିଠାରୁ ପୃଥିବୀ ଆଣିଲେ ଛଡ଼ାଇ
ପାତାଳ ଦିବସେ ଉତ୍ତମ ସେହୁ ମହୀ ବହୀ ।
ଅସ୍ତ୍ରଘାତରେ ତାହାର ନୋହିବ ମରଣ
ବର ଦେଇଛନ୍ତି ତାକୁ କାଶ୍ୟପ ବ୍ରାହ୍ମଣ ।
ଦିତିଙ୍କଠାରୁ କରିବ ଯେବେ କ୍ଷୀରପାନ
ବରାହ ଦନ୍ତରେ ମଧ୍ୟ ନୋହିବ ନିଧନ ।
ଦିତି ବାଟ ଚାହିଁ ଏବେ କରିଛନ୍ତି ଆଶ
ପୃଥିବୀର ବହନରେ ଭୋଳ ସେ ରାକ୍ଷସ ।
ଦିତି ଯଦ୍ୟପି ନ ଦେବେ ତାକୁ କ୍ଷୀରପାନ
ତେବେ ମୃତ୍ୟୁ ନୋହି ତାର ବରାହେ ନିଧନ ।
ଏଥୁ ଅନନ୍ତରେ ଶୁଣ ହେ ଲୋକପାଳକ
ଚକ୍ର ଫେରି ଆସିବାରୁ ହୋଇଣ ବିମୁଖ ।
ତାହା ଦେଖି କୋପ କରି ପ୍ରଭୁ ଦାମୋଦର
କୌମୋଦକୀ ଗଦା ନେଇ କଲେ ପ୍ରହାର
ସେ ଗଦା ଦୈତ୍ୟର ହୃଦେ ବାଜିଲାକ ଯାଇ
ତେତେ ଗଦା ଆଘାତରେ କିଛି ହେଲା ନାହିଁ ।
ଯେ ଗଦା ଆଘାତେ କୋଟି ମେରୁ ହେବ ଧୂଳି
କଣ୍ଟକ ସ୍ୱର କଲା ତାକୁ ମହାବଳୀ ।

ପାଇଛି ପ୍ରଭୁଙ୍କୁ ଗଦା ପିଟିଲା ଅସୁର
ଘୁଞ୍ଚିଗଲେ ମହାବାହୁ ପଦନହୁଁ ଖର ।
ପ୍ରଭୁ ପ୍ରହାରନ୍ତେ ଦୈତ୍ୟ ପ୍ରହାର କରଇ
ନିର୍ଘାତ ପ୍ରାୟେ ଗଦା ଶବଦ ହୁଅଇ ।
ଗଦା ଗଦା ପଡ଼ନ୍ତେ ଅନଳ ଝଲକେ
ସପତ ପାତାଳ ନାଗ ଲୋକାଦି ଦୁଲୁକେ ।
ଅପ୍ରମିତ ତେଜଶାଳୀ କାଶ୍ୟପର ବାଳ
ନାରାୟଣଙ୍କୁ ପ୍ରହାର କରେ ଅନର୍ଗଳ ।
ଜଗନ୍ନାଥ ହୃଦେ ଗଦା ହୁଅନ୍ତେ ଆଘାତ
ମୋହେ ଅଚେତନ ହେଲେ ପଡ଼ି ଭୂମିଗତ ।
ତାହା ଦେଖି ହିରଣ୍ୟାକ୍ଷ ସିଂହନାଦ କରି
ବେଗେ ବେଗେ ପଳାଇଲା ଘେନି ବସୁନ୍ଧରୀ ।
ଦେବତାମାନେ ରହିଣ ରଣ ଦେଖୁଥିଲେ
ପ୍ରଭୁ ପଡ଼ିଯିବା ଦେଖି ହାହାକାର କଲେ ।
ବେଦନ କରି ମିଳିଲେ ତାଙ୍କ ପାଶେ ଯାଇଁ
ବ୍ରହ୍ମା ରୁଦ୍ର ଧନପତି ଇନ୍ଦ୍ର ଆଦି ହୋଇ ।
ତାଙ୍କୁ କୋଳାଗ୍ରତ କରି କରନ୍ତି କାରୁଣ୍ୟ
ଆହା ହେ ସ୍ୱାମି ତେଜକ ବ୍ରହ୍ମାଣ୍ଡର ପ୍ରାଣ ।
ଜାଣିଲୁ ନିଶ୍ଚୟ ନାଶ ଗଲା ଏ ସଂସାର
ତୋତେ ଯେବେ କଲା ଦୈତ୍ୟ ଏମନ୍ତ ପ୍ରକାର
ଆଉ କାଏ ଯେ ତାହାକୁ ପାରିବ ନ ମାରି
କାଏ ଆଣିବ ତାଠାରୁ ପୁଣି ବସୁନ୍ଧରୀ ।
ଏମନ୍ତ କନ୍ଦଣ ଦେବେ କରନ୍ତି କାରୁଣ୍ୟ
ଚେତା ପାଇଣ ଉଠିଲେ ପ୍ରଭୁ ନାରାୟଣ ।
ତାହାଙ୍କୁ ଦେଖିଣ ସର୍ବେ ଶିରେ କର ଦେଲେ
ହେ ଦେବ କି ବୁଦ୍ଧି ଆଉ କରିବା ବୋଇଲେ
ତୋର ଅଚେତନ ଦେଖି ଆମ୍ଭ ପ୍ରାଣ ନାହିଁ
ବୋଲନ୍ତି ଶ୍ରୀ ନୀଳାଚଳନାଥ ତାଙ୍କୁ ଚାହିଁ । ..
କହ ତଞ୍ଚମାଥ କଥ ବୁଦ୍ଧି ବିଚାରି ତୋତେ
ମୋହେ ପଡ଼ିଗଲି ମୂର୍ଚ୍ଛି ଦନୁଜ ଆଘାତେ ।
ମୋର ସୁଦର୍ଶନ ନହେ ନୋହିଲା ବିନାଶ
ଚତୁରାନନ ବୋଇଲେ ଯିବା ଦତ୍ତ ପାଶ ।
ସେହୁ ଯଦ୍ୟପି ନ ଦେବ ତାକୁ ପ୍ରତ୍ୟୟାନ
ତେବେ ତୁ ମାରିବୁ ତାକୁ ନିଶ୍ଚେ ଭଗବାନ
ଅସ୍ତ୍ର ଶାସ୍ତ୍ରାଘାତେ ସେହୁ ନ ହୋଇବ ହତ
ଆନ ବୁଦ୍ଧି କରି ତାକୁ ମାର ଜଗନ୍ନାଥ ।

ଚାଲ ସମସ୍ତେ କହିବା ଦତ୍ତଙ୍କୁ ବୁଝାଇ
ଏକ୍ଷଣି ଯିବ ପ୍ରଭୁ ଚଳିବାର ପାଇଁ ।
ଜୟ ଜୟ ଜଗନ୍ନାଥ ବଇକୁଣ୍ଠ ପତି
ଜୟ ଜୟ ଜଗନ୍ନାଥ ଅଗତିର ଗତି ।
ଜୟ ଜୟ ଜଗନ୍ନାଥ ଜଗତ କରତା
ଜୟ ଜୟ ଜଗନ୍ନାଥ ସର୍ବ ପିତାମାତା ।
ସମସ୍ତେ ବୋଲନ୍ତି ତୋତେ ଦୟାଳୁ ପୁରୁଷ
ସାଧୁଙ୍କୁ ରଖି ଦୁଷ୍ଟଙ୍କୁ କରୁ ତୁ ବିନାଶ ।
ଦୁଷ୍ଟ ନିସୂଦନ ବୋଲି ତେଣୁ ତୋର ନାମ
ଦୁଷ୍ଟଙ୍କୁ ମାରି ସନ୍ଥଙ୍କୁ ଦେଉଁ ମୋକ୍ଷ ଧାମ ।
ସଂସାରେ ଲଗାଇଛୁ କେତେ ଖେଳ ଘର ।
ସେ ଖେଳ ବୁଝିବ କାଏ ଶକ୍ତି ଅଛି କାର ।
ଶିବ ବ୍ରହ୍ମା ପୁରନ୍ଦର ଦଶଦିଗପାଳେ
ଏମାନଙ୍କର ଶକ୍ତି ନାହିଁ ବୁଝିବାକୁ ତେବେ ।
ପ୍ରସନ୍ନ ବଦନ ନାଥ ଦୟା କର ମୋତେ
ତୋର ନାମ ସଦା ରହୁ ମୋର ହୃଦଗତେ ।
ସଂସାର ସାଗରେ ତୋର ନାମ କଣ୍ଠ ଭେଳା
ପାରି ହେବାକୁ ଭରସା ବିଷ୍ଣୁ ଚକାଡ଼ୋଳା ।
ବାଞ୍ଛା ନାହିଁ ହେବ ମୋର ଅନ୍ୟ ବଡ଼ ପଣ
ନାରାୟଣ କାମପାଳ ମାଗଇ ଶରଣ ।

—୦—

## କାଶ୍ୟପଙ୍କ ଗୃହକୁ ଦେବଗଣଙ୍କ

## ସହିତ ଶ୍ରୀମନ୍ନାରାୟଣଙ୍କର

## ଗମନ ଓ ଦତ୍ତଙ୍କର

## ସତ୍ୟ ପ୍ରତିଜ୍ଞା

ପୁଣହିଁ ପୃଚ୍ଛା କରିଲେ ଘତା ପରୀକ୍ଷିତ
ହେ ମୁନି ଛେଦନ କର ସନ୍ଦେହ ତୁରିତ ।
ହିରଣ୍ୟାକ୍ଷ ଦଇତକୁ ନ ପାରିଲେ ହରି
କେମନ୍ତେ ଉଦ୍ଧାର ହେଲା ପୁଣି ବସୁନ୍ଧରୀ
କେଉଁ ପ୍ରକାରେ ନିଧନ କଲେ ଭଗବାନ
ହେ ଶୁକ ମୁନି କହ ହେ ସେ ବିବରଣ ।

କହନ୍ତି ମୁନି ପଣ୍ଡିତ ଶୁଣ ନୃପବର
ଯେଉଁରୂପେ ହିରଣ୍ୟାକ୍ଷ ହୋଇବ ସଂହାର ।
ବ୍ରହ୍ମା ବଚନେ ଚଳନ୍ତି ସର୍ବ ସୁରଗଣ
ସଙ୍ଗରେ ଘେନି ଅନନ୍ତ ପ୍ରଭୁ ନାରାୟଣ ।
କାଶ୍ୟପଙ୍କ ସଦନକୁ ସର୍ବେ ଯାନ୍ତି ବାହି
ପଥ ମଧ୍ୟରେ ନାନାଦି କଥା କହି କହି ।
କାଶ୍ୟପ ଦିତିଙ୍କୁ ଡାକି ବସାଇଣ ପାଶ
ବୋଇଲେ ତୋ ପାପପୁତ୍ର ପୃଥ୍ୱୀ କଲା ନାଶ ।
ବସୁନ୍ଧରାକୁ ବାସୁକି ମସ୍ତକରୁ ନେଲା
କେତେ ସେ କୁକର୍ମ କଥା ନ କଲା କି ଭଲା ।
ତୋ ନିମନ୍ତେ ଅପକୀର୍ତ୍ତି ପାଇଲି ସଂସାରେ
ଅସୁର ବାଳକ ତୁହି ଧରିଲୁ ଉଦରେ ।
ମରଗଲେ ମୋ କୁଳରୁ ଯାଆନ୍ତା କଳଙ୍କ
ସ୍ଥିର ହୋଇଣ ରହନ୍ତା ସପ୍ତଲୋକ ପାକ ।
ଦିତି ବୋଇଲେ ସେ ଦୁଷ୍ଟ ଗଲା ଏବେ କାହିଁ
ମୁନି ବୋଇଲେ ଆଣୁଛି ପୃଥ୍ୱୀକି ବହି ।
ସ୍ୱାମୀଙ୍କର ମନ ଦୁଃଖ ଦେଖି ମହାସତୀ
ଗାଲେ ହାତ ଦେଇ ବସି ଚିନ୍ତାକଲେ ଅତି
ସ୍ୱାମୀ ଭାର୍ଯ୍ୟା ବସିଛନ୍ତି ବଢ଼ ବ୍ୟାକୁଳେ ।
ଏମନ୍ତ କାଳେ ମିଳିଲେ ଦେବତା ସକଳେ ।
ତାଙ୍କୁ ଦେଖି ମହାମୁନି ଆସନ ଅର୍ପିଲେ
ବ୍ରହ୍ମା ବିଷ୍ଣୁ ଗୁରୁଦେବ ଆସନେ ବସିଲେ ।
କଶ୍ୟପ ମହାତମା ପ୍ରଭୁଙ୍କ ଚରଣେ
ଦଣ୍ଡ ପ୍ରଣାମ କରିଲେ ଯାଇ ତତକ୍ଷଣେ ।
ଶିବ ବ୍ରହ୍ମାଙ୍କ ଚରଣେ କଲେ ନମସ୍କାର
ଆଶୀର୍ବାଦ ପାଇ ଉଭା ଯୋଡ଼ ହୋଇକର ।
ଅନ୍ୟ ଦେବତା ମୁନିଙ୍କୁ କଲେ ପ୍ରଣିପାତ
ଦିତିଙ୍କ ଚରଣେ ଯାଇ ଲଗାଇଲେ ମାଥ
ବ୍ରହ୍ମା ବୋଇଲେ କଶ୍ୟପ ଦିତି ମୁଖ ଚାହିଁ
ତୁମ୍ଭ ପୁତ୍ର ନାଶ କଲା କି ଅର୍ଥରେ ମହୀ ।
ସେହି କାର୍ଯ୍ୟ ପାଇଁ ବିଜେ ପ୍ରଭୁ ନାରାୟଣ
ଆବରହି ଆସିଛନ୍ତି ସର୍ବ ସୁରଗଣ ।
କହୁଅଛୁ ସର୍ବଦେବ ଶୁଣ ଆଗୋ ଦିତି
ତୁମରକୁ କ୍ଷୀରପାନ ଦେଉଅଛ ନିତି ।
ଜଗତ ନାଶ ଯିବକି ତୁମ୍ଭ ପୁତ୍ର ଥିବ
ଜଗତକୁ ରଖିବ କି ପୁତ୍ର ନାଶଯିବ ।
କହ ସେ ହିତ ତୁମ୍ଭଙ୍କୁ ବୁଝ ତାହା ପୁଣ
ପୁତ୍ର ଶାଧ କଲେ ପୃଥ୍ୱୀ ନାଶଯିବ ଜାଣ ।
ଶୁଣ ଗୋ ସାଧ୍ୱୀ ତୁମ୍ଭେ ଜଗତର ମାତ
ତେତିଶ କୋଟି ଦେବତା ଛନ୍ତି ତୁମ୍ଭ ସୁତ ।
ଏସ ପୁତ୍ର ଥିଲେ ଜଗତ ରହିବ କି ଆଉ
କ୍ଷୀର ନ ଦେବ ଗୋ କହୁଛନ୍ତି ମହାବାହୁ ।
ତୁମ୍ଭେ କ୍ଷୀର ଦେଲେ ତାକୁ ନ ହୋଇବ ଜଣି
ନିଷ୍ଟସ୍ୱରେ ନାଶ ସେହୁ କରିବ ଧରଣୀ ।
ଏକେଉଁ କଥା କହୁଅଛ ବୁଝ ତତପର
ଏହି କଥା ଶୁଣି ଦିତି କରନ୍ତି ଉତ୍ତର ।
ମୋର ଗୃହକୁ ଅଇଲେ ପ୍ରଭୁ ନାରାୟଣ
ତୁମ୍ଭେ ଆବର ମହେଶ ପୁଣି ଦେବଗଣ ।
ମୁହିଁ ଯାହା ହେଲେ ମଧ୍ୟ ଅଟେ ସ୍ତିରୀ ନାରୀ
ମୋର ଶକ୍ତି କାହିଁ ତୁମ୍ଭ କଥା ନାସ୍ତି କରି ।
ଏ ସଂସାର ଥିଲେ ପୁଣି ସବୁ ମୋର ଅଛି
କି କରିବ ସେ ପାପିଷ୍ଠ ପୁତ୍ରଟା ବଞ୍ଚି ।
ନ ଦେବି ମୁଁ କ୍ଷୀରପାନ ଯାଅ ହେ ଦୈଇତ
ତୁମ୍ଭ ପାଇଁକି ଛାଡ଼ିଲି ଏବେ ମୋର ସୁତ ।
ଆବର ଜଗତ କଷ୍ଟ ନ ପାଇବ ସହି
କି କରିବ ମୋର ସେହି ଦୁଷ୍ଟ ପୁତ୍ର ଥାଇ ।
ଜଗତ ରହିଲେ ମୋର ସବୁ କଥା ଭଲ
ଛାଡ଼ିଲି ସେ ପୁତ୍ର ମରୁ ଯାଉ ପୃଥ୍ୱୀ ଭଲ ।
ବ୍ରହ୍ମା ବୋଇଲେ ତେବେ ଗୋ ତୁମ୍ଭେ ସତ୍ୟକର
ଶୁଣ ଦେବୀ ସତ୍ୟ ୨ ବୋଇଲେ ତିନିବାର
ଦିତି ପ୍ରତିଜ୍ଞା କଲେ ଯହୁଁ ସତ୍ୟବାଣୀ
ସାଧୁ ସାଧୁ କହିଲେ ସେ ଦେବତାଏ ଶୁଣି ।
ଅତି ଆନନ୍ଦରେ ତାଙ୍କୁ ପ୍ରଣାମ କରିଲେ
ଜଗତ ରଖିଲୁ ମାତ ବୋଲି ବାହୁଡ଼ିଲେ ।
ପଥେ ଯାଉଁ ଦେବତାଏ କରନ୍ତି ବିଚାର
ଅସ୍ତ୍ର ନ ଭେଦଇ କେଉଁ ମରିବ ଅସୁର ।
ବୁଦ୍ଧି ଦିଶୁନାହିଁ ବୋଲି କହି ଚକ୍ରପାଣି
ପୁଣି ବୋଇଲେ ସମରେ ଦେଖାଯିବ ତାହା ।
ଦେବେ ବୋଇଲେ ତୁମ୍ଭେତ ଦୈତ୍ୟ ନିସୂଦନ
ତୁମ୍ଭଙ୍କୁ କି ଅଗୋଚର ତା ମୃତ୍ୟୁ ବିଧାନ ।
ସମସ୍ତ ବୁଦ୍ଧି ବଳର ତୁମ୍ଭେ ମୂଳଧାର
ପୃଥ୍ୱୀ ରଚି ଜୀବ ରୂପେ କରୁଛ ବିହାର ।

କୌଣସି ରୂପରେ ମାତ୍ର ରଖ ବସୁନ୍ଧରା
ଦେବଙ୍କ ବାକ୍ୟେ ସନ୍ତୋଷ ହେଲେ ଦେବହରି
ଜୟ ଜୟ ହରି ତୁମ୍ଭେ ସର୍ବଭୂତେଶ୍ୱର
ଜୟ ଜୟ ହରି ତୁମ୍ଭେ କମ୍ବୁ ଗଦାଧର ।
ଜୟ ଜୟ ହରି ତୁମ୍ଭେ ବ୍ରହ୍ମାଣ୍ଡ କରତା
ଜୟ ଜୟ ହରି ତୁମ୍ଭେ ଚତୁର୍ବର୍ଗ ଦାତା ।
ଜୟ ଜୟ ହରି ତୁମ୍ଭ ଗୁଣ ଅକଳଣ
ଦୀନଜନଠାରେ ନାଥ କର ହେ କରୁଣା ।
ହେ କରୁଣା ସାଗର ସୁତା ହୃଦୟ ବିହାରୀ
ନାରାୟଣ କାମପାଳେ ଭକ୍ତି ନଅ ତାରି ।

—୦—

## ପିତାମାତାଙ୍କ ନିକଟରେ ହିରଣ୍ୟାକ୍ଷର ଅପମାନ ଓ ଶ୍ରୀମାନ୍ ନାରାୟଣଙ୍କର ବରାହ ରୂପ ଧାରଣ

ମୁନିଙ୍କି ପୁଚ୍ଛନ୍ତି ପୁଣି ନୃପଙ୍କ ଅଗ୍ରଣୀ
କେଉଁ କର୍ମ କଲ ଦୈତ୍ୟ ଶ୍ରୀହରିଙ୍କୁ ଜିଣି ।
କି ଉପାୟେ ଜଗନ୍ନାଥ କରିଲେ ସଂହାର
ପୁଣି ପିତା ମାତା ପାଶେ କଲା କି ଅସୁର ।
ହତ ସ୍ତନ୍ୟପାନ ତାକୁ ଦେଲେ କି ନଦେଲେ
ସେହି କଥା ଶୁଣି ତୃପ୍ତି ଲଭିବି ମୁଁ ଭଲେ ।
କହନ୍ତି ଶ୍ରୀ ଶୁକମୁନି ଶୁଣ ନରନାଥ
ଯାହା ପଚାରିଲ ତାର ସମସ୍ତ ଚରିତ ;
ଦେବେ ଗଲେ ମୁନିଠାରୁ ହୋଇଣ ବିଦାୟ
ପୃଥିବୀ ଧରି ଅସଇ ଦୈତ୍ୟ ପାପାଶୟ ।
କାଶ୍ୟପଙ୍କ ଶ୍ରୀମୁଖରେ ମିଳିଲା ସେ ଯାଇ
ନମସ୍କାର କରଇ ସେ ପୃଥ୍ୱୀ ଶିରେ ଥାଇ ।
କୋପଭରରେ କାଶ୍ୟପ କଲ୍ୟାଣ ନ କଲେ
ଏ କସ ହେଲୁ ବୋଲି ତାକୁ ପଚାରିଲେ ।
ହିରଣ୍ୟାକ୍ଷ ବୋଲେ ଶୁଣି ଆଣିଛି ଅବନୀ
ହେ ପିତା ତୁମ୍ଭଙ୍କୁ ଦେବ ଦେଖା ଦରଶନ ।
ଏ ବ୍ରହ୍ମାଣ୍ଡରେ ହୋଇବ ତୁମ୍ଭେତ ଈଶ୍ୱର
ପୁତ୍ର ହୋଇ ଦେବ ଅବା କସ ଉପହାର ।

କେତେ କଷ୍ଟରେ ପାଳନ କରିଅଛ ମୋତେ
ଜନମ ଧରିଲେ ପୁଣି କଷ୍ଟେ ଗର୍ଭଗତେ ।
ତେଣୁକରି ତୁମ୍ଭଙ୍କୁ ମୁଁ ଦେବ ବସୁନ୍ଧରା
ଏଥେ ଏବେ ଆସି ହୁଅ ଈଶ୍ୱର ଈଶ୍ୱରା ।
ପୃଥ୍ୱୀ ଆଣନ୍ତେ ପୁତ୍ରଙ୍କେ ଓଗାଳିଲ ଯାଇ
ବୋଇଲ ସେ ମୂର୍ତ୍ତି ଅଟେ ଜଗତ ଗୋସାଇଁ ।
ଶଙ୍ଖ ଚକ୍ର ଗଦା ପଦ୍ମ ଧରିଥିଲ କରେ
ଆସି ସମର କରିଲ ମୋହର ସଙ୍ଗରେ ।
ତୁମ୍ଭର ପ୍ରସାଦେ ତାକୁ ପକାଇଲି ମାରି
ଏବେ ତୁମ୍ଭର ଗ୍ରାମରେ ଦେଲି ବସୁନ୍ଧରା ।
ଆମ୍ଭେ ଯଦ୍ୟପି ତୁମ୍ଭର ହୋଇଛୁ କୁମର
ଆନ ସ୍ତର କଥା ହେବ ସଂସାରେ ଈଶ୍ୱର ।
କାଶ୍ୟପ ଶୁଣିଲେ ସବୁ ହିରଣ୍ୟାକ୍ଷ ବାଣୀ
ବିଷ୍ଣୁ ଦ୍ରୋହ କଲ ବୋଲି ମନେ ମନେ ଗୁଣି
ପୁଣି ତାହାକୁ ଅନାଇ ବୋଲନ୍ତି ବଚନ
ସେହି ସ୍ୱାମୀ ଅଟନ୍ତିରେ ନିତ୍ୟ ସନାତନ ।
ବିଷ୍ଣୁ ଦ୍ରୋହୀ ହେଲୁ ତୁହି ଆରେ ଦୁରାଶୟ
କିଏ ସେ ରଖିବ ଆଉ ତୋତେ ଜନପୃଷ୍ଠ ।
ପୃଥିବୀକି ଆଣିଲୁ ତୁ ନାହିଁ ବୋଲିକରି
ଅକାରଣେ ନାଶକଲୁ ଏବେ ବସୁନ୍ଧରା ।
କହୁଁ କହୁଁ କୋପକଲେ ମୁନି ମହାମତି
ଏମନ୍ତକାଳେ ମିଳିଲେ ଆସି ଦେବୀ ଦିତି ।
ଦେଖିଣ ଦଇତ୍ୟ ତାଙ୍କୁ କଲା ନମସ୍କାର
କଲ୍ୟାଣ ନ କରି ମାତା କୋପେ ଥରହର ।
ଅଧର ଚାପି ବୋଲନ୍ତି ତାକୁ କୋପେ ସ୍ୱର୍ଣ୍ଣି
ରେ ପାମର ପୃଥ୍ୱୀ କଥା ଆଣିଲୁ ତୁ ବହୁ ।
ମୋ ଗର୍ଭରେ ଜନ୍ମ ହେଲୁ କେତେ ସ୍ଥାନମାନ
କାଣ୍ଡିକ ଦେଲ ବିଧାତା ଏ ପାପୀ ନନ୍ଦନ
ଅକାରଣେ ସଂସାରକୁ ନାଶକଲୁ ତୁହି
ଶନ୍ତା ସାଗରରେ ବୁଡ଼ି ହେଉଅଛୁ ଦହି ।
ଯା ଯାରେ ପାମର ପାଶେ କଥା ଅଛୁ ରହି
ତୋହର ମୁଖକୁ ଆଉ ନ ସ୍ୱର୍ଣ୍ଣିବ ମୂର୍ତ୍ତି ।
ସଂସାରରେ ପ୍ରଭୁ ଯେଣୁ ମୋହର ବଇରୀ
ଯା ଯା ଏଥୁ ଭଲେ ନ ତୁ ଦେବ ଭୟଙ୍କରି ।
ସୁତ ହତ୍ୟା ଦୋଷକୁ ମୁଁ କରୁଅଛି ଭୟେ ।
ନୋହିଲେ କି ଥାନ୍ତୁ ତୁହି ଏତେବେଳେ ଯାଏ

ମାତା ପିତାଙ୍କର କଷ୍ଟ କଥାମାନ ଶୁଣି
କହଇ ତନୟ ସ୍ତବେ ଯୋଡ଼ି ବେନପାଣି ।
ଦୁର୍ଦ୍ଧର୍ଷ ଦୟା ତୋତେ ଏବେ ଆଦେ ମାତ
ଦେଖ ମୁଷ୍ଟି ବସୁଧରା ବାସୁକିର ମାଥ ।
ଏତ ବୋଇଲେରେ ଦୁଷ୍ଟ ମୋର କ୍ଷୀର ନାହିଁ
ଶୁଣିକରି ସେ ଦନୁଜ କୋପେ ବାହୁଡ଼ିଲ ।
ତେତେବେଳେ ଏଣ୍ଡେବେ ଦ୍ୟନ୍ତେ କ୍ଷୀରପାନ
ବରାହ ଦନ୍ତେ କ ଆଜ ଦ୍ୱାଅନ୍ତା ନଧନ ।
ବୋଇଲ କ୍ଷୀର ନ ଦେଲୁ ଆସନ୍ତେ ମୁଁ ମାଡ଼ି
ବସୁନ୍ଧରା ଆଜ ନଷ୍ଟେ ପକାଇବ ଝାଡ଼ି ।
ଦୋହଲେ ବୃନ୍ଦାଇଦେବୀ କାରୁଣ୍ୟର ପାଣି
ପରେ ତୁମ୍ଭ ଦୁହିଁଙ୍କୁ ମୁଁ ପକାଇବ ହାଣି ।
ରାଗେ ଏମନ୍ତ ବୋଲାଣ ଚଳିଲ ଅସୁର
ସ୍ୱର୍ଗପୁର ଘୋଟିଗଲ ସେ କାଳେ ଅନ୍ଧାର ।
ପୃଥିବୀକୁ ଘେନ ଦୈତ୍ୟ ଥିଲ ଉଭା ହୋଇ
ସୂର୍ଯ୍ୟ ମେରୁ ଉହାଡ଼ନ୍ତେ ହୋଇଥିଲ ଗୁଇ ।
ଏ ବଚନେ ପଚାରିଲେ ପରୀକ୍ଷ ରାଜନ
ହେ ମୁନି ସନ୍ଦେହ ଯୁକ୍ତ ହେଲ ମୋର ମନ ।
କେଉଁରୂପେ ପୃଥିବୀକୁ ସ୍ୱର୍ଗେ ଘେନଗଲ
ସ୍ୱର୍ଗେ ମର୍ତ୍ତ୍ୟ ବେନବାଣୀ କାହିଁ ଏକ ହେଲ ।
ହେମୁନି ଏକଥା ମୋତେ ବିସ୍ତାରଣ କୁହ
ତହେଁ ସନ୍ଦେହ ହୋଇଲା ଫିଟୁ ମୋ ସନ୍ଦେହ ।
କହନ୍ତି ଶ୍ରୀ ଶୁକମୁନି ଶୁଣ ନୃପବର
ଯେବଣ କାଳରେ ସୃଷ୍ଟି କଲେ ବେଦବର ।
ପୃଥିବୀ ମଧ୍ୟରେ ତାକୁ ନେଇଣ ସ୍ଥାପିଲେ
ପାତାଳ ଶୂନ୍ୟେ ଅକ୍ଷୟ ଶିଳାକୁ ରଖିଲେ ।
ତହିଁର ଉପରେ ଯାଇ ମେରୁ ଅଛି ରହି
ପୃଥିବୀ ଭେଦିଛି ତାକୁ ମୂଳ ପ୍ରାପ୍ତ ହୋଇ ।
ତେଣୁ ମେରୁକୁ ଅଲଗା ଅଟେ ବସୁନ୍ଧରା
ଉପାଡ଼ଣ ନେଲ ତେଣୁ ସୁରଙ୍କ ଅରିଣ ।
ଅକ୍ଷୟ ଶିଳା ଆଣରେ ମେରୁ ଅଛି ରହି
ତାହା ଉପରେ ଦେବତା ଉହ୍ଲଗନ୍ତି ଯାଇ ।
ଖୁଆଦଣ୍ଡ ପରାୟେକ ଅଛି ମେରୁଗିରି
ଶୁଣି ପରମ ସନ୍ତୋଷ ହେଲେ ଦଣ୍ଡଧାରୀ ।
ପୁଣି ପଚାରନ୍ତି ନୃପ କୁହ ମୁନିବର
କୋପେ ମାତା ପିତାଠାରୁ ଗଲାକ ଅସୁର ।

ଦେବେ ବିଷ୍ଣୁର କହିଲେ ଆବର କେମନ୍ତ
କେଉଁ ପ୍ରକାରେ ମାଇଲେ ତାକୁ ଜଗନ୍ନାଥ ।
ଅପୂର୍ବ ଚରିତ ଏହୁ ଶୁଣି ହେବ ତୋଷ
ପୃଥିବୀକୁ ବହୁ ଦୁଃଖ ଦେଲ ସେ ରାକ୍ଷସ ।
ଏବେ ତାର ମୃତ୍ୟୁ ପଥ କହିବ ଶ୍ରବଣ
କେମନ୍ତେ ରଖିଲେ ପୃଥ୍ୱୀ ପ୍ରଭୁ ନାରାୟଣ ।
କହନ୍ତି ଶ୍ରୀ ଶୁକମୁନି ଶୁଣ ପରୀକ୍ଷିତ
କାଶ୍ୟପ ଭବନୁ ଗଲେ ଦେବତା ସମସ୍ତ ।
ତାହାଙ୍କର ପଛରେ ତ ଅସୁର ଅଇଲା
ମାତାପିତା ଅପମାନେ ପୁଣି ବାହୁଡ଼ିଲା ।
ଦେବତାମାନେ ବୋଲନ୍ତି ପ୍ରଭୁ ମୁଖ ଚାହିଁ
ଦନୁଜ ଆସେ ଓଗାଳ ଏବେ ଦେବ ଯାଇ ।
ଏହା କହି ବ୍ରହ୍ମା ରୁଦ୍ର ବହୁ ସ୍ତୁତି କଲେ
ତାହାଶୁଣି ହରି ତହିଁ ସନ୍ତୋଷ ହୋଇଲେ ।
ବୋଇଲେ ଦୈତ୍ୟକୁ ଆଜ କରିବି ମୁଁ ହତ
ଏହାକହି ଚଳଗଲେ ଜଗତର ନାଥ ।
କୌଣସି ଅସ୍ତ୍ର ନ ଭେଦେ ତାହାର ଶରୀରେ
କେମନ୍ତେ ମାରିବି ବୋଲି ଭାଳନ୍ତି ମନରେ ।
ଯାଉଁ ଯାଉଁ ବୁଦ୍ଧି ଏକ ହୋଇଲା ଉଦିତ
ଦନ୍ତଦନ୍ତ ନଖାଘାତେ କରିବି ମୁଁ ହତ ।
ବରାହର ମୁଖ ଧରି କରିବି ସମର
ଦନ୍ତଘେନ ଦଇତର ଛେଦିବି ଶରୀର ।
ମୃତ୍ୟୁ ତାର ନ ହୋଇବ ଅସ୍ତ୍ର ପ୍ରହାରରେ
କାଶ୍ୟପ ଦେଇଛି ବର ବିଷମ ପ୍ରକାରେ ।
ଏମନ୍ତ ଭାଳି ବରାହ ମୁଖ ସେ ହୋଇଲେ
ଦେଖି ସକଳ ଦେବତା ଭୟରେ ଥରିଲେ ।
ବେନଗୋଟି ଦାନ୍ତ ପୁଣି ହୋଇଲା ବାହାର
କାଳାନ୍ତକ ତୁଲ୍ୟପ୍ରାୟ ତୀକ୍ଷଣମୁନ ତାର ।
ସେ ମୁନେ ପଡ଼ିଲେ ମାଛି ହେବ ନବଖଣ୍ଡ
ସୂର୍ଯ୍ୟକିରଣ ପରାୟେ ତେଜରେ ପ୍ରଚଣ୍ଡ ।
ଦୁଇ ଯୋଜନରେ ଦୀର୍ଘ ଦାନ୍ତ ଦୁଇଗୋଟି
ମେରୁକୁ ମାଇଲେ ଜଣେ ସେହୁ ଯିବ ଫୁଟି ।
ବେନ ନୟନ ଉଜ୍ଜ୍ୱଳ କୋଟି ସୂର୍ଯ୍ୟ ଜିଣି
କର୍ଣ୍ଣେ କୁଣ୍ଡଳ ଦିଶେ ଯେହ୍ନେ ସୌଦାମିନୀ ।
ଶଙ୍ଖ ଚକ୍ର ଗଦା ପଦ୍ମ ଧରି ଚାରିଭୁଜେ
ଯଜ୍ଞ ବରାହ ରୂପରେ ପାତାଳକୁ ବଜେ ।

ଶ୍ରୀବରାହ ନାରାୟଣ ନାମ ଜପ ନରେ
ଅଶେଷ ଜନ୍ମର ପାପ ନ ଥିବ ଦେହରେ ।
ଗୋହତ୍ୟା ବ୍ରହ୍ମହତ୍ୟାଦି ଥିଲେ ମିବ ଛୁଟି
ହେଳନ ସ୍ନେହେ ଧର ସେହି ନାମ ଗୋଟି ।
ଶ୍ରୀ ବରାହ ନାରାୟଣ ପୃଥ୍ୱୀ ଉଦ୍ଧାରନ୍ତା
ତାଙ୍କ ନାମେ ନ ରହିବ ଯମନର ଚିନ୍ତା ।
ନଅଳସେ ତାଙ୍କ ନାମ ଭଜଲେ ଯତନେ
କିଛି ଦୁଃଖ ନ ରହିବ ସଂସାର ବନ୍ଧନେ ।
ଶ୍ରୀ ବରାହ ନାରାୟଣ ମୁକତି ପସରା
ଚତୁର୍ବର୍ଗ ଫଳ ଦାତା ସେ ଅନନ୍ତ ପରା ।
ଶ୍ରୀ ବରାହ ନାରାୟଣ ଭକତ ବତ୍ସଳ
ଯେ ଭାବରେ ଯେହୁ ଭାବେ ପାଏ ସେହି ଫଳ
କେତେ ମୁଁ କହିବି ତାଙ୍କ ମହିମା ଅଶେଷ
ଯାହାଙ୍କର ଆଦି ଅନ୍ତ ନ ପାଇଲେ ଶେଷ ।
ଶ୍ରୀ ବରାହ ନାରାୟଣ ଚରଣ ପଙ୍କଜ
ସଦା ଭଜେ ନାରାୟଣ କାମପାଳ ଦ୍ୱିଜ ।

—*—

**ହିରଣ୍ୟାକ୍ଷ ସହିତ ଶ୍ରୀମାନ୍ ବରାହ ନାରାୟଣଙ୍କର ଦ୍ୱିତୀୟଥର ଯୁଦ୍ଧ ଓ ଦୈତ୍ୟର ପତନ ଏବଂ ହିରଣ୍ୟ କାଶ୍ୟପ ଦିତି ପ୍ରଭୃତିଙ୍କ ଶୋକ**

ପୁଣି ପଚାରନ୍ତି ରାଜା ମୁନିଙ୍କ ଅଗ୍ରତ
ପିତାମାତାଠାରୁ ଦୈତ୍ୟ ହୋଇଲା ଲଜ୍ଜିତ ।
ତହୁଁପରେ କେଉଁଆଡେ କଲା ଗମନ
କରୁଥିଲେ ମାଇଲେ ତାଙ୍କୁ ପ୍ରଭୁ ଭଗବାନ ।
ବରାହ ପୁରାଣ ଆସି ହେଲା ଶେଷ ପ୍ରାୟ
ଶୁଣାଇ କୃତାର୍ଥ କର ମୁନି ମହାଶୟ ।
ଏବେ ସେ ଦୈତ୍ୟ ଅଧମ ନିଧନ ଚରିତ
ଶୁଣି ଆନନ୍ଦିତ ହେଉ ମୋର ପଞ୍ଚଭୂତ ।
ରାଜାଙ୍କ ବଚନ ଶୁଣି ଶୁକ ମୁନିବର
କହନ୍ତି ଶ୍ରବଣ କର ହେଲା ଯେ ପ୍ରକାର ।
ମହାକ୍ରୋଧେ ଚଳେ ଦୈତ୍ୟ ପାଇ ଅପମାନ
ଓଗାଳିଲେ ଆସି ତାଙ୍କୁ ପ୍ରଭୁ ଭଗବାନ ।
ତାହାର ଆଗରେ ଛିଡା ହୋଇଲେ ସେ ଯାଇ
ମନ୍ଦର ସମାନ କାୟ ଭୟଙ୍କର ହୋଇ ।
ମାନବର ଜନେବର ବରାହ ମୁଖଟି
ଦନୁଜ ଦଳନ ପ୍ରଭୁ ବିଷ୍ଣୁ ପ୍ରାୟ ଘୋଟି ।
ତାଙ୍କୁ ଦେଖିଣ ଦନୁଜ ଆଣେ ଗଦା ଧରି
ହସ୍ତ ବରାହକୁ ଦେଖି ବୋଲେ ଉଚ୍ଚକରି ।
ତୁମ୍ଭ ପରା ଜଗତରେ ଈଶ୍ୱର ବୋଲାଅ
ଏଡ଼େ ପ୍ରପଞ୍ଚ ସ୍ୱରୂପ କିମ୍ପା ପୁଣି ହୁଅ ।
ଏମନ୍ତ ବୋଲିଣ ଗଦା ପ୍ରହାରିଲା ନେଇ
ଅନ୍ତରୀକ୍ଷେ ଚାଲିଗଲେ ବରାହ ଗୋସାଇଁ ।
ନିର୍ଘାତ ପ୍ରହାରେ ତହିଁ ବାଜିଲାକ ତଳେ
କମ୍ପିଲା ପାତାଳ ପୃଥ୍ୱୀ ଦୁଲୁକେ ପ୍ରବଳେ ।
ସେ ଗଦା ଉଠାଇ ବଳେ ଧଇଲାକ ପୁଣି
ବରାହ ସ୍ୱାମୀ ବୁଡ଼ିଲେ ପ୍ରଳୟର ପାଣି ।
ପାତାଳରେ ଅଛି ଯେଉଁ କାରୁଣ୍ୟର ଜଳ
ଅନ୍ତକାଳେ ବ୍ରହ୍ମାଣ୍ଡକୁ ନାଶଇ ସକଳ ।
ସେହି ଜଳ ଘୋଟିଯାଏ ମହାଶୂନ୍ୟ ଯାଏ
ବ୍ରହ୍ମାଣ୍ଡ ହତ ଜଳ ସେ କାରୁଣ୍ୟ ବୋଲାଏ
ସେହି ଜଳେ ନାରାୟଣ ବୁଡ଼ି ଉପୁରୁଥାଇଁ
ସୂର୍ଯ୍ୟ ଦେବତା ପରାୟେ ଜ୍ୟୋତି ବିରାଜଇ ।
ତାଙ୍କୁ ନିରୀକ୍ଷଣ କରି ଗର୍ଜିଣ ଅସୁର
ଡାକଇ କାହିଁକି ବୁଡ଼ି ଲୁଚିଛୁ ପାମର ।
ଜଗତ ଈଶ୍ୱର ପରା ବୋଲାଉରେ ବୁଢି
ଘୁମୁକୁ ନ ଆସି କିମ୍ପା ଜଳେ ଅଛୁ ରହି ।
ଦୈତ୍ୟର ନିଷ୍ଠୁର ବଚନେ କୋପେ ଭଗବାନ
ଜଳରୁ ଆସି ମିଳିଲେ ତାର ସନ୍ନିଧାନ ।
ଦୈତ୍ୟ ବୋଲେ ଦାନ୍ତ ଆଜ ଭାଙ୍ଗିବି ତୋହର
ଦେଖି ସମ୍ଭାଳିବୁ କିପା ତେଦାକ୍ ମୋହର ।
ଏମନ୍ତ କହି ପ୍ରହାର ଉଦ୍ୟମ ସେ କରେ
ଆଡ଼ ହୋଇଗଲେ ପ୍ରଭୁ ବହୁତ୍ ବେଗରେ ।
ହୁଙ୍କାର କରି ନିଶ୍ୱାସ ଛାଡ଼ି ଚକ୍ରପାଣି
ବାମ ନାସାପୁଟୁ ଜାତ କରାହେକ ପୁଣି ।
ଦ୍ୱାଦଶ ଯୋଜନ ଅଟେ ଦନ୍ତ ଆୟତନ
ଖୁରୁ କରନ୍ତେ ପାତାଳ ହେଲା କମ୍ପମାନ ।
ପ୍ରଳୟାଗ୍ନି ତେଜ ପ୍ରାୟ ଦିଗପାଳ ବ୍ୟାପେ ।
ଶୂନ୍ୟେ ଲୁଚିଲା ପିଠି ମହାଶ୍ୱ ରୂପେ ।
ମହା ତେଜୋମୟ ଦେହ ଠାକୁରଙ୍କ ଲୋମ
ସେ ଲୋମ ସବୁ ଅଟଇ ବୃକ୍ଷଡାଳ ସମ ।

ନାଭିକୁ ଦଳନ୍ତ ହୋଇ ଅତି କୋପମୟ
ବରାହ ଶରୀର ଗୋଟି ଶୁକ୍ଳ ଅତିଶୟ ।
ଧାଇଁଲେ ବରାହ ମୂର୍ତ୍ତି ଘୋର ନାଦ କରି
ଦୈତ୍ୟ ଶରୀରକୁ ଦାନ୍ତେ ମକାଇଲେ ଚିରି ।
ସେ ବରାହ ଦାନ୍ତ ଅଟେ ତୀକ୍ଷ୍ଣ ପରଚଣ୍ଡ
ବାଜନ୍ତେ ଦନୁଜ ଦେହ ହେଲା ଖଣ୍ଡ ଖଣ୍ଡ ।
ଖଣ୍ଡ ଖଣ୍ଡ ହୋଇ ଛୁଡ଼ି ପଡ଼ିଲା ପାତାଳେ
ମେଦମାଂସା ରହିଅଛି ମସ୍ତକ ମଣ୍ଡଳେ ।
ଯେତେବେଳେ ପ୍ରାଣ ହାରି ପଡ଼ିଲା ଦଇତ
ପୃଥ୍ୱୀ ମଣ୍ଡ୍ ଧରିନେଲେ ଦାନ୍ତର ଅଗ୍ରତ ।
କହନ୍ତି ଶ୍ରୀ ଶୁକମୁନି ଶୁଣ ନୃପମଣି
ପ୍ରଥମ ବରାହ ଦନ୍ତେ ରହିଲା ଧରଣୀ ।
ହି ଶାସ୍ତ୍ର ବରାହ ରହେ ସଂସାର ମଧ୍ୟରେ
ଯାହାକୁ ଶ୍ୱେତ ବରାହ ବୋଲୁଛନ୍ତି ନରେ ।
ଆକାଶେ ସକଳ ସୁରେ ଦୈତ୍ୟବଧ ଜାଣି
ପ୍ରଭୁଙ୍କ ମସ୍ତକେ ପୁଷ୍ପ ବରଷିଲେ ଆଣି ।
ସାଧୁ ସାଧୁ ଶବଦ ଯେ ଶୁଭେ ନିରନ୍ତର
କର ଯୋଡ଼ି ସ୍ତୁତି ପାଠ କଲେ ବେଦବର ।
ଶୁଣି ସନ୍ତୋଷେ ବୋଲନ୍ତି ପ୍ରଭୁ ନାରାୟଣ
ଏବେ ସର୍ବସୁରେ ରହ ନିଶ୍ଚିନ୍ତ ହୋଇଣ ।
ନାରାୟଣଙ୍କ ଆଜ୍ଞାରେ ସର୍ବ ସୁର ଗଲେ
ସେ ଯାହା ଭୁବନେ ଯାଇ ନିଶ୍ଚିନ୍ତେ ରହିଲେ
ଏବେ ଅନ୍ୟ କଥା ସବୁ ଶୁଣ ନୃପବର
ପୃଥିବୀକୁ ସଜ କଲେ ବରାହ ଈଶ୍ୱର ।
ପୂର୍ବ ବିଧିରେ ସ୍ଥାପନ କଲେ ବସୁନ୍ଧରା
ସେହିପରି ହେଲା କିଛି ନ ହୋଇଲା ବାରି ।
ଭଙ୍ଗାଭୁଣ୍ଡା କିଛି ମାତ୍ର ନ ରହିଲା ଆଉ
ସଂସାର ଉଶ୍ୱାସ କଲେ ପ୍ରଭୁ ମହାବାହୁ ।
ଯାହା କଳ୍ପନାର ସୃଷ୍ଟି ହୋଇଥିଲା ଜାତ
ସେ ପୁଣି ସଞ୍ଚିତ କରି ହେଲେ ତୋଷ ଚିତ୍ତ ।
ଜଗତର ଲୋକମାନେ ବାରତା ପାଇଲେ
ପୃଥ୍ୱୀ ନେଇଥିଲା ଦୈତ୍ୟ ବୋଲିଣ ଜାଣିଲେ ।
ତାହାକୁ ବଧ କରିଲେ ପ୍ରଭୁ ଚକ୍ରପାଣି
ଜନପ୍ରାଣୀ ଉଚ୍ଚାରିଲେ ସାଧୁ ସାଧୁ ବାଣୀ ।
ପୃଥ୍ୱୀଲୋକେ ହନାହୁଇ କଷ୍ଟ ପାଇଥିଲେ
ଯେତେ ଲୋକ ମରିଥିଲେ ସ୍ୱର୍ଗକୁ ସେ ଗଲେ ।

ଖାଇଥିବା ଲୋକମାନେ ଉଠିଲେ ସୁଖରେ
ପୂର୍ବେ ଯେଉଁରୂପେ ଥିଲେ ସେହି ପରକାରେ ।
ଏଥୁଅନନ୍ତରେ ଭୂତମ୍ପ ଶୁଣ ନୃପବର
ବସୁନ୍ଧରା ଧରିଛନ୍ତି ବରାହ ଶ୍ରୀଧର ।
ତକ୍ଷଣେ ବାସୁକୀ ଆସି ମିଳିଲେ ଛାମୁରେ
ଭୂମିଷ୍ଠ ପ୍ରଣାମ କରି ଲୋଟିଲା ପାଦରେ ।
ବୋଇଲେ ଅପ୍ରାଧ କ୍ଷମ ପ୍ରଭୁ ନାରାୟଣ
ଶ୍ରୀପାଦ ସେବକ ମୁହିଁ ଚରଣେ ଶରଣ ।
ମୋର ଶିରେ ବସୁନ୍ଧରା ଦିଅ ସର୍ବଗ୍ରାହୀ
ସର୍ବଦା ତୋର କିଙ୍କର ଅଟେ ସିନା ମୁହିଁ ।
ଏମନ୍ତ କହିଣ ନେଇ ସମର୍ପିଲେ ଶିର
ତକ୍ଷଣେ ବସୁନ୍ଧରାକୁ ଦେଲେ ଚକ୍ରଧର ।
ମହୀଧର ନିଜ ଶିରେ ବସୁନ୍ଧରା ଧରି
ନିଜ ଆସନେ ବସିଲେ ତହୁଁ ଯାଇକରି ।
ପାତାଳୁ ଚଳନ୍ତି ତହୁଁ ବରାହ ଶ୍ରୀଧର
ପ୍ରବେଶ ହୋଇଲେ ଯାଇ ସର୍ବ ମୃତ୍ୟୁପୁର ।
କ୍ଷୀର ସମୁଦ୍ର କୂଳରେ ମିଳିଲେ ସେ ଯାଇ
ସେ ବେନି ଦନ୍ତ ରଖିଲେ ତହୁଁ ହୁଗୁଳାଇ ।
ସେହି ବେନିଦନ୍ତ ପୁଣି ଫିଙ୍ଗି ଦେଲେ ଜଳେ
ନାରାୟଣ ଦନ୍ତ ପଡ଼େ ଅଗାଧ ସଲିଳେ ।
ସେଠାରେ ପଡ଼ି ରହିଲା ମାଳଚନ୍ଦ୍ର ହୋଇ
ଏଥୁ ଅନନ୍ତରେ ପ୍ରଭୁ କମଳାର ସାଇଁ ।
ବରାହର ରୂପ ଗୋଟି ଛାଡ଼ିଲେ ତତକ୍ଷଣ
କନ୍ଦର୍ପ ପୁରୁଷ ହେଲେ ରାଜୀବ ଲକ୍ଷଣ ।
ଅନନ୍ତ ଶୟନଠାରେ ମିଳିଲେ ସେ ଯାଇଁ
ବନିତା ନନ୍ଦନ ଦେଖି ପାଦରେ ପଡ଼ଇ ।
ଲକ୍ଷ୍ମୀ ସରସ୍ୱତୀ ଆସି ପାଛୋଟିଣ ନେଲେ
ପଚାରନ୍ତେ ସବୁକଥା ତାହାଙ୍କୁ କହିଲେ ।
ଜଳଧି ଭିତରେ ଅଛି ରତ୍ନ ସିଂହାସନ
ତହିଁରେ ଶୟନ କଲେ ପ୍ରଭୁ ଭଗବାନ ।
ଅନନ୍ତ ଶଯ୍ୟାରେ ଥାଇ ଯୋଗନିଦ୍ରା ଗଲେ
ଲକ୍ଷ୍ମୀ ସରସ୍ୱତୀ ତହିଁ ଚରଣ ଚାପିଲେ ।
ସେହି ମଣିମୟପୁର ବିଶ୍ୱକର୍ମାକୃତ
ମୁକ୍ତା ମାଣିକ୍ୟ ସୁବର୍ଣ୍ଣେ କରିଛି ମଣ୍ଡିତ ।
ମୁକୁତ ପତାକା ତହିଁ ଉଡ଼େ ଫର ଫର
ଶୁକ୍ଳ ସୌଧ ପୁର ଦିଶେ ଅତି ମନୋହର ।



[ ହିରଣ୍ୟାକ୍ଷ ବଧ ଓ ବରାହରୂପୀ ନାରାୟଣଙ୍କ ଦନ୍ତାଗ୍ରେ ପୃଥିବୀ ଧାରଣ ]

ଏଥୁ ଅନନ୍ତରେ ଶୁଣ ହେ ନରେଶ
ବରାହର ଅବତାର ଏହିଠାରୁ ଶେଷ ।
କାଶ୍ୟପ ବଂଶ ଆବର ବାରତା ପାଇଲେ
ଦଣ୍ଡେ ଶୋକ କରି ପୁଣି ମଙ୍ଗଳ ହୋଇଲେ ।
ରହିଲେ ଯେ ଦେବ ଜନ କର୍ମକୁ ଆଦରି
ହୋଇଲେ ଯାହା ଅଜ ନ ପାଇଲା ସେପରି ।

ହିରଣ୍ୟ ଆଗତର ଘର ଜଣାଇଲା ଯାଇ
ଭୂମି ଘାଇ ଆଣୁଥିଲା ପୃଥିବୀ ମୁଣ୍ଡାଇ ।
ଯେ ସକଳ କଥା ତୁମ୍ଭେ ଜାଣିଛ ସମସ୍ତ ।
ପୃଥିବୀର ପ୍ରାଣୀ ହେଲେ ଯେଉଁ ରୂପେ ବ୍ୟସ୍ତ ।
ସେ କୋପେ ଦଉଡ଼ି ତୁମ୍ଭ ଧଣି ନାରାୟଣ
ହିରଣାକ୍ଷ ଖାରଙ୍କର ଘେନଗଲେ ପରାଣ ।

ପ୍ରାଣହାର ମହାବୀର ପାତାଳେ ପଡ଼ଇ
ଏମନ୍ତ ଶୁଣି ହିରଣ୍ୟ ଉଠିଲା ବୋବାଇ ।
ଆହା ଭାଇ ହିରଣ୍ୟାକ୍ଷ ମୋର ପ୍ରାଣ ପରି
ଏକାକେ ବହୁ ଆଣିଲୁ ଭୁଜ ବସୁନ୍ଧରା ।
ତୋତେ ବୁଣି ନାରାୟଣ ମାଇଲା କେମନ୍ତେ
ଏ କଥା ଶୁଣି ଆଶ୍ଚର୍ଯ୍ୟ ଲାଗୁଅଛି ମୋତେ ।
ପିତା କରେ ବଜ୍ରଠାରୁ ଅଣ୍ଟା ତୋର କାୟ
ମାତାଙ୍କର ସ୍ତନ୍ୟପାନେ ନାହିଁ ତୋର ଭୟ ।
ଅସ୍ତ୍ରଶସ୍ତ୍ରରେ ତୋହର ନୁହନ୍ତା ମରଣ
କେମନ୍ତେ ମାରିଲା ତୋତେ ଖଳ ନାରାୟଣ ।
ସର୍ବଗୁଣେ ପରିପୂର୍ଣ୍ଣ ଥିଲୁ ଅରେ ଭ୍ରାତ
ଛିଣ୍ଡି ପଡ଼ିଲା ମୋହର ଏବେ ଏକ ହାତ ।
ସଂହାର କରିବା ପାଇଁ ସଦା ତୋର ମନ
କାହିଁ ଗୁଡ଼ିଗଲୁ ଭୁଜ ହେ ରଙ୍କରତନ ।
ଅନେକ ବେଳ ପର୍ଯ୍ୟନ୍ତ ବହୁ ଶୋକ କଲା
ମନ୍ତ୍ର ମନ୍ତ୍ରୀ ବୁଝାଇଲେ ପ୍ରବୋଧ ହୋଇଲା ।
ବୋଇଲା ନାରାୟଣକୁ କରିବି ନିପାତ
ମୋର ବାଳକ ମାରିଲା କେଡ଼େ ତା ସାହାସ ।
ଦେବତାଏ ମାଇଲେ ତାଙ୍କୁ ମେଳି ହୋଇ
ନିଧନ ଦେବତାଙ୍କୁ ନ ମାଇବି କାହିଁ ।
ଏମନ୍ତ କହି ସଭାରେ ହାତ ପଜାଡିଲା
ପ୍ରତିଜ୍ଞା କରି ହିରଣ୍ୟ ଉର୍ଦ୍ଧ୍ୱକୁ ଗର୍ଜିଲା ।
କହନ୍ତି ଶ୍ରୀ ଶୁକମୁନି ଶୁଣ ହେ ରାଜନ
ସକଳ କହିଲୁ ତୋତେ ବରାହ ପୁରାଣ ।

ପ୍ରତିଦିନ ଏହାକୁ ଯେ ପଢ଼ିବ ଶୁଣିବ
ସକଳ ଦୁର୍ଗତି ଖଣ୍ଡି ବୈକୁଣ୍ଠେ ବସିବ ।
ବରାହ ପୁରାଣ ସର୍ବ ପୁରାଣରେ ସାର
ଶୁଣି ଆନନ୍ଦିତ ହେଲେ ଉତ୍ତରା କୁମାର ।
ମୁନିଙ୍କ ଚରଣେ ଯାଇ ହୋଇ ପ୍ରଣିପାତ
ବୋଇଲେ ଏ ଜନ୍ମ ମୋର କରିଲ କୃତାର୍ଥ ।
ଜୟ ତୁମ୍ଭେ ଜଗନ୍ନାଥ କରୁଣାସାଗର
ଜୟ ତୁମ୍ଭେ ଜଗନ୍ନାଥ ଜଗତ ଈଶ୍ୱର ।
ଜୟ ତୁମ୍ଭେ ଜଗନ୍ନାଥ ଦୁଷ୍ଟ ଦର୍ପହାରୀ
ଜୟ ତୁମ୍ଭେ ଜଗନ୍ନାଥ କୌଶଳ ବଳରୀ ।
ଜୟ ତୁମ୍ଭେ ଜଗନ୍ନାଥ ଅବର୍ଣ୍ଣ ଅବ୍ୟୟ
ଜୟ ତୁମ୍ଭେ ଜଗନ୍ନାଥ ଅଟ ନାରାୟଣ ।
ଜୟ ତୁମ୍ଭେ ଜଗନ୍ନାଥ ବରାହ ମୂରତି
ଜୟ ତୁମ୍ଭେ ଜଗନ୍ନାଥ ପୃଥ୍ୱୀ କଲ ସ୍ଥିତି ।
ଜୟ ତୁମ୍ଭେ ଜଗନ୍ନାଥ ମୁଁ ଶରଣାଗତ
ମୋହର ଡାକ ନ ଶୁଣେ କର୍ଣ୍ଣକୁ କାହିଁତ ।
କାହାକୁ କହିବି କିଏ କରିବ ଶ୍ରବଣ
ଜାଣୁଛି ଏ ଦେହ ପରା ହେବ ଅକାରଣ ।
ତୁମ୍ଭ ପରା ପ୍ରଭୁ ଥାଉଁ ହେଲେ ଏଣୁପରି
ଜଗତ ଦୁର୍ନାମ ଦିନା ଘୋଷିବ ତୁମ୍ଭର ।
ଅଧିକ କହିବି କିସ ସବୁ ତୁମ୍ଭେ ଜାଣ
କାମପାଳ ନାରାୟଣ ମାଗଇ ଶରଣ ।

—ଇତି ଶ୍ରୀ ବରାହ ପୁରାଣ ସମାପ୍ତ—

ମୁଦ୍ରାକର--ଶଶୀ ଦେଓ୍ୱା, ଶଶିକା ପ୍ରିଣ୍ଟିଂ ପ୍ରେସ, ଅଲିଶା ବଜାର କଟକ-୨

# ଉତ୍କଳର ଉପାଦେୟ ଗ୍ରନ୍ଥ ପ୍ରକାଶନ

* ସତ୍ୟାର୍ଥ ପ୍ରକାଶ ସିଦ୍ଧାନ୍ତ ଦର୍ପଣ ସେଟ — ଟ ୭୯-୦୦
* ଋଗ୍ବେଦ ସଂହିତା ସେଟ୍ — ଟ ୧୦୦-୦୦
  ଅଧ୍ୟାପକ ଗୌରକୁମାର ବ୍ରହ୍ମାଙ୍କ ଭୂମିକାସହ
* ଉପେନ୍ଦ୍ରଭଞ୍ଜ ଗ୍ରନ୍ଥାବଳୀ ସେଟ — ଟ ୧୨୫-୦୦
* ଭୀମଭୋଇ ଗ୍ରନ୍ଥାବଳୀ — ଟ ୨୫-୦୦
* ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ — ଟ ୧୪-୫୦
* ବେଣୁଧର ପଦ୍ୟାବଳୀ — ଟ ୧୫-୦୦
* ମନୁ ସଂହିତା — ଟ ୧୫-୦୦
* ପଣ୍ଡିତ ସର୍ବସ୍ୱ ( ଆତ୍ମଲିଙ୍ଗ ଓ ସଭାଙ୍କ କୃତ ) — ଟ ୧୮-୦୦
* ଗଦାଧର ପଦ୍ଧତି — ଟ ୧୨-୦୦
* ଋଗ୍ବେଦୀୟ କର୍ମକାଣ୍ଡ (ଅଖଣ୍ଡ ସେଟ) — ଟ ୫୨-୫୦
* ବ୍ରହ୍ମଚାରୀଙ୍କ ଗୀତା — ଟ ୩୦-୦୦
* ବ୍ରହ୍ମଚାରୀ କର୍ମକାଣ୍ଡ — ଟ ୧୪-୦୦
* ଶ୍ରୀ ଚୈତନ୍ୟ ଭାଗବତ — ଟ ୧୫-୦୦
  ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ କୃତ
* ଯୁଗଳ ରସାମୃତ ଲହରୀ — ଟ ୨-୫୦
* ଓଡ଼ିଶାର ରଙ୍ଗମଞ୍ଚ ଇତିହାସ — ଟ ୧୫-୦୦
  ଅଧ୍ୟାପକ ରମେଶ ସାମନ୍ତରାୟଙ୍କ
* ଓଡ଼ିଆ ସାହିତ୍ୟରେ ଭୀମଭୋଇ — ଟ ୪-୦୦
* MAHIMA DHARMA (By N. Senapati) — Rs 4-00

---

ଧର୍ମଗ୍ରନ୍ଥ ଷ୍ଟୋର — ଅଲିଶାବଜାର, କଟକ-୨, ଫୋନ୍ ନଂ:-୨୪୭୧୨